# ଟ୍ରିଙ୍ଗ... ଟ୍ରିରିଙ୍ଗ... ରିଙ୍ଗ!



ସଂଚୟ-କୁମାର ଏକ ନୂଆ ନାଲିଆ ସାଇକଲ ଚଢ଼ି ସ୍କୁଲକୁ ଯାଉଛି ।

ଛୁଟି ପରେ ସ୍କୁଲକୁ ଯିବାର ପ୍ରଥମ ଦିନ;
ସଂଚୟ-କୁମାରକୁ ଟିକେ ଅନେଇ ଦେଖ
ତ ! ସାଇକଲ କେମିତି ଚଳେଇ
ଚଳେଇ ଯାଉଛି । ଟ୍ରିଙ୍ଗ ଟ୍ରିରିଙ୍ଗ ଖଙ୍ଗ ।



ଭାଲୁ ଅତି ଉଦାସ ଭାବେ କହିଲା,
"ଏ ସହରରେ କି ଚଢ଼ିଆ
ସାଇକଲ୍!




ବୁଢ଼ା କଇଁଚା ଉଠିଲା ସିଂହ
ପର୍ଦ୍ଦାରେ କୁଳୁକୁଳ ଘୋର କହିଲା






'ଦା-ଦା-ଦା !' ଚିଲ୍ଲାଇ ଉଠି କହିଲା
ସଂଚୟ-କୁମାର, 'ଏ ନୂଆ ନାଲିଆ ସାଇକଲ୍ ମୋର ।
ମୋ ଛଡ଼ା କେହି ଏଥିରେ ଚଢ଼ିବେ ନାହିଁ ।
ମୋ ନିଜ ଟଙ୍କାରେ ଏହା କିଣାଯାଇଛି ।
ମୁ ଜମାଇ କି ପିଇ ଏ ଟଙ୍କା ସଂଚିଛି !'



ଖଟଖଟ ହସିଗଲେ ।
'ଖୁଁ ଖୁଁ'
ସଂଚୟ-କୁମାରକୁ କହିଲେ
ପକେଇଦେଲେ ସମସ୍ତେ ସାଇକଲ ଚଢ଼ି
ପାଉଁଚେ- ଜଣେ କେମିତି ? ଅନ୍ୟମାନଙ୍କୁ
ଡାକି କହିଲେ 'ହେଇ, ସମସ୍ତେ ଆସ ତ !'
ସମସ୍ତେ ଏକାଠି ମିଶି ଏକ ଯୋଜନା କଲେ ।



କହୁଁ କହୁଁ ହେଲା—
କେତେ ସଂଚୟ-କୁମାରକୁ ଘୋଟେଇଲେ । ସଂଚୟ-କୁମାର
ମୋଟୁ ପାଖରେ ପହଞ୍ଚିଲା ମାତ୍ରେ ଝଟଝଟ ଚୁଇଁଗଲା
ଜଲେଇ ସମସ୍ତଙ୍କୁ ଟୁଇଁଗଲା ଜାଣେଦେବ ।
ତା ପରେ ସ୍ଫୂର୍ତ୍ତି ଅଟେଇ ଠିଆ ହେଲା ପେଟୁରାମ । ଆଉ
ଭାଲୁ ସିଂହ ଗୋଟାଏ ଗୋଇଠା ମାରିବ । ସେ ତଳକୁ
ପଡ଼ିପିବ-ତାପରେ ସାଇକଲ ଆମର ।




ଏଥର ଶୁଣ ତଣ ହେଲା :
କେହୁ ସଂଚୟ-କୁମାରକୁ ଘୋଟେଇବାକୁ ଅଟକୁ କଲମାତ୍ରେ, ସଂଚୟ-କୁମାର ଜୋରରେ ତାର ନୂଆ ନାଲିଆ ସାଇକଲ
ଚଳେଇଲା । ଏତେ ଶୀଘ୍ର ଯିବ ବୋଲି କେହି ଜାଣି ପାରି ନ ଥିଲେ । ଆଜି ପିଲ୍ଲାଠାରୁ ବି ଅଧିକ ଶୀଘ୍ର !

ଶୁଆ—ମଇନା ଗଛ ଉପରୁ ସବୁ
ଦେଖୁଥାନ୍ତି । ଗୋଟିଏ ଅଧି ବୋଲି କହିଲେ :




ଷ୍ଟେଟ ବ୍ୟାଙ୍କରେ ସଂଚୟ କରନ୍ତୁ
ଆଉ ଦେଖନ୍ତୁ ଆପଣଙ୍କର ସଂଚୟ କପର
ବଢ଼ି ଚାଲିଛି !

**ଷ୍ଟେଟ ବ୍ୟାଙ୍କ**
ଆସନ୍ତୁ, ମିଳିମିଶି ଆଗେଇ ଯିବା



# ମୀନା ଜ୍ୟାମିତି କୁ ଘୃଣା କରୁଥିଲା

ସୁଜାତା କହୁଥିଲା ଛି, ଜ୍ୟାମିତିଟା କି ବାନ୍ତିକର,
କି ବିରକ୍ତିକର !
ତାକୁ ଆଦୌ ଭଲ ଲାଗୁ ନ ଥିଲା ସେ ସବୁ ଆକ୍ୟୁଟ,
ଅବଟ୍ୟୁସ କୋଣ ପାରାଲାଲୋଗ୍ରାମ, ହେକ୍ସାଗନ ।
ସତରେ ସୁଜାତା କାହିଲ ହେଇଯାଉଥିଲା !
ପରେ ଗୋଟିଏ ମଜା କଥା ଘଟିଲା: ତାର ଭାଇ ରାଜୁ ତା
ପାଇଁ ଗୋଟିଏ ସୁନ୍ଦର ହଳଦିଆ, ନାରଙ୍ଗୀ ରଙ୍ଗର
ରୂପାଭଳି ଚକଚକ ବଢ଼ିଆ କମ୍ପାସ ଆଣିଦେଲେ ।
କମ୍ପାସ ବକ୍ସ ଓ ତାର ଭିତରର ଉପକରଣ ଦେଖି ମୀନାର
କି ଖୁସି ! ସେ ଦିନ ରାତିରେ ସେ ସ୍ୱପ୍ନ ଦେଖିଲା ସେ
ଯେପରି ଟ୍ରାଙ୍ଗଲର ଶୀର୍ଷ ଉପରକୁ ଚଢ଼ୁଛି, ସର୍କଲ ମଝିରେ
ଘୁରୁଛି; ସ୍କେଲରେ ଭାରସାମ୍ୟ ରଖୁଛି । କି ଯେ ମଜା !
ବର୍ତ୍ତମାନ ଜ୍ୟାମିତି, ହେକ୍ସାଗନ, ପାରାଲାଲୋଗ୍ରାମ ସବୁ ଭଲ
ଲାଗୁଛି । ଏମିତି ମୀନା ଜ୍ୟାମିତିକୁ ଭଲ ପାଇଲା ।
ଆଶ୍ଚର୍ଯ୍ୟର କଥା — ନୁହେଁ କି ?







## କ୍ୟାମେଲ

ଇନଷ୍ଟ୍ରୁମେଣ୍ଟ ବକ୍ସ






କ୍ୟାମଲିନ
ପ୍ରାଇଭେଟ ଲି.
ଆର୍ଟ ମ୍ୟାଟେରିଆଲ
ଡିଭିଜନ
ଜେ. ବି. ନଗର
ବମ୍ବେ-୪୦୦ ୦୫୯

କ୍ୟାମଲିନ ଅରଞ୍ଜା ଟେକ୍ନିକାଲର
ନିର୍ମାତାଙ୍କ ଠାରୁ



VISION 794 ORI

**Results of Chandamama—Camlin Colouring Contest No. 13 (Oriya)**

*1st Prize:* Sri Bira Kishore Panda, Sambalpur. *2nd Prize:* Mr. Sevapnasish Das, Scondargarh, *3rd Prize:* Sitaram Mishra, Nayagar. *Consolation Prizes:* Ramakrishna Sahoo, Bhubaneswar - 6; Amitabha Panda, Balimela; Swepna Kumar Swain, Orissa; Keshab Chandra Sahoo, Kunjang; Bankim Mohanta, Rourkela-2.





# ଜହ୍ନମାମୁଁ

ଜୁନ୍ ୧୯୮୦



## ବିଷୟ-ସୂଚୀ








# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଂଚାଳକ : ନାଗିରେଡ୍ଡୀ

ଏ ସଂଖ୍ୟାର ବେତାଳ କଥା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଯେ କୌଣସି ଅଲୌକିକ ଶକ୍ତି ପ୍ରତି ସମସ୍ତଙ୍କ ଆକର୍ଷଣ ଥାଏ । କିନ୍ତୁ ସେଭଳି ଶକ୍ତି ଲାଭ କରିବା ଗୋଟାଏ କଥା, ତା'ର ଯଥାର୍ଥ ଉପଯୋଗ କରି ପାରିବା ଅନ୍ୟ କଥା । ଜଣେ ସତ୍ ଲୋକ ମଧ୍ୟ ସେ ଶକ୍ତିକୁ ସବୁବେଳେ ଉଚିତ କାମରେ ଲଗାଇ ପାରିବ, ସେ କଥା କହିହେବ ନାହିଁ ।

## ଅମରବାଣୀ

ବ୍ରହ୍ମଘ୍ନେ ଚ ସୁରାପେ ଚ ଚୌରେ ଭଗ୍ନବ୍ରତେ ତଥା ।
ନିଷ୍କୃତିର୍ବିହିତା ସଦ୍ଭିଃ କୃତଘ୍ନେ ନାସ୍ତି ନିଷ୍କୃତିଃ ॥

ବ୍ରାହ୍ମଣର ହତ୍ୟାକାରୀ, ମଦ୍ୟପ, ଚୋର, ଶପଥଭଙ୍ଗକାରୀ—ଏ ସଭିଙ୍କ ନିଷ୍କୃତି ପାଇଁ ବିଜ୍ଞଲୋକେ ପନ୍ଥା ନିର୍ଦ୍ଦେଶ କରିଛନ୍ତି । କିନ୍ତୁ କୃତଘ୍ନର ନିଷ୍କୃତି ନାହିଁ ।

ବର୍ଷ : ୧୩ ଜୁନ୍ ୧୯୮୦ ଅଙ୍କ : ୧୨

ପ୍ରତିସଂଖ୍ୟା ଟ୧.୫୦ ବାର୍ଷିକ ମୂଲ୍ୟ : ଟ୧୮.୦୦






ପ୍ରଶ୍ନ : ବ୍ୟୁମେରାଙ୍ଗ୍ କ'ଣ ଓ ଏହା କିପରି ବ୍ୟବହୃତ ହୁଏ ?

ଉତ୍ତର : ବହୁ ଶତାବ୍ଦୀ ଧରି ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନେ ବ୍ୟବହାର କରୁଥିବା ଗୋଟିଏ ଧରଣର ଅସ୍ତ୍ରର ନାମ ହେଲା ବ୍ୟୁମେରାଙ୍ଗ୍ । ଏହା ଦେଖିବାକୁ ଦାଆ ଭଳି । ଏହାର ଆକାର ଛ ଇଞ୍ଚରୁ ଚାରି ଫୁଟ ଯାଏ ହୋଇପାରେ । ଏହା କାଠରେ ତିଆରି ।

ବୁମେରାଙ୍ଗ୍ ଯଥାର୍ଥ ଭାବରେ ବ୍ୟବହାର କରିବା ନିମନ୍ତେ ବହୁତ ଅଭ୍ୟାସ ଓ ସତର୍କତା ଲୋଡ଼ା । କାରଣ ଯାହା ଉଦ୍ଦେଶ୍ୟରେ ଏହା ନିକ୍ଷେପିତ ହୋଇଥାଏ ଯଦି ତା' ଦେହରେ ନ ବାଜିବ, ତେବେ ଏହା ପ୍ରେରକ ପାଖକୁ ଫେରିଆସିବ । ପ୍ରେରକ ସେତେବେଳେ ସତର୍କ ନ ଥିଲେ ଏହା ତାହାକୁ ଆଘାତ କରିବ ।

ଯଦି ଠିକ୍ ଭାବରେ ନିକ୍ଷେପ କରାହେବ, ତେବେ ଏହା ପ୍ରାୟ ଶହେ ଗଜ ପର୍ଯ୍ୟନ୍ତ ସିଧା ଯାଇ ତା'ପରେ ବାମକୁ ବୁଲି ଚକଟିଏ କାଟି ପ୍ରେରକ ପାଖକୁ ଫେରିବ । ଏହାର ନିର୍ମାଣ କୌଶଳ ଏବଂ ଏହାକୁ ନିକ୍ଷେପ କରିବାର କଳା ଯୋଗୁଁ ଏହା ସମ୍ଭବପର ହୋଇଥାଏ ।

ଆଦିବାସୀମାନେ ସାଧାରଣତଃ ପକ୍ଷୀ ଶିକାର ଉଦ୍ଦେଶ୍ୟରେ ବୁମେରାଙ୍ଗ୍ ବ୍ୟବହାର କରିଥା'ନ୍ତି ।

ପ୍ରେରକ ପାଖକୁ ଫେରିବା ପାଇଁ ତିଆରି ନୁହେଁ, ଏପରି ବ୍ୟୁମେରାଙ୍ଗ୍ ବି ଥାଏ । ସେସବୁ ଗୋଷ୍ଠି ଗୋଷ୍ଠି ଭିତରେ ଲଢ଼େଇ ବେଳେ ବ୍ୟବହୃତ ହୋଇଥାଏ ।

ଇଂରାଜୀ ସାହିତ୍ୟରେ ବ୍ୟୁମେରାଙ୍ଗ୍‌କୁ ଅନେକ ସମୟରେ ଏହି ଅର୍ଥରେ ବ୍ୟବହାର କରାଯାଇଥାଏ : ଯଦି କେହି କାହାରି ବିରୁଦ୍ଧରେ କିଛି କହିବାକୁ ଯାଉଥିବ ଅଥଚ ସେ କାମର ପ୍ରତିକ୍ରିୟା ଏପରି ହେବ ଯେ ଚକ୍ରାନ୍ତକାରୀହିଁ ସେଥିରେ ବିପଦରେ ପଡ଼ିବ, ତେବେ ସେ ବୁମେରାଙ୍ଗ୍‌ର ଶିକାର ହେଲା ବୋଲି କହିବାକୁ ହେବ ।




ଅନ୍ତଲେଖା ଅତ୍ୟନ୍ତଲେଖାକୁ କହିଲା, "ଭାଇ, ଭାଗ୍ୟ ଅନୁକୂଳ ଥିଲେ ଅତି ଅଯୋଗ୍ୟ ଲୋକ ବି ହଠାତ୍ ଧନଶାଳୀ ହୋଇଯାଏ। ଥରେ ଥରେ ପୁଣି ଦେଖାଯାଏ, ସୁଯୋଗ୍ୟ ଲୋକେ ବି ଲୋଭ ପରବଶ ହୋଇ ବୋକାଙ୍କ ଭଳି କାମ କରି ହଟହଟା ହୁଅନ୍ତି। ତୁମ ସାଥିରେ ଅନେକ ସମୟ ଗପସପ କଲିଣି। ଏଥର ଅନୁମତି ଦିଅ। ମୁଁ ଘରକୁ ଯାଏ।"

ଅତ୍ୟନ୍ତଲେଖା ମୁଣ୍ଡରେ ଅଲୌକିକ ଚକ୍ର ବୁଲୁଥାଏ। ସେ ସେଥିରୁ ମୁକ୍ତ ହେବାର କୌଣସି ଆଶା ଦେଖୁ ନ ଥାଏ। ଅନ୍ତଲେଖା ସହ ଗପସପ କରି ସେ ଯାହା ଟିକିଏ ଦୁଃଖ ଭୁଲି ରହିପାରୁଥିଲା। ତେଣୁ ଅନ୍ତଲେଖା ଚାଲି-ଯିବାକୁ ବସିବାରୁ ସେ ନିହାତି ଅସହାୟ ଅନୁଭବ କଲା।

ଅତ୍ୟନ୍ତଲେଖା କହିଲା, "ମୁଁ ଏମିତି ବିପଦରେ କଲବଲ ହେଉଥିବା ଅବସ୍ଥାରେ ମୋତେ ଛାଡ଼ି ଚାଲିଯିବ ବୋଲି କହୁଛ କପରି? ସାଧୁମାନେ କହନ୍ତି ମିତ୍ରକୁ ବିପଦରେ ଛାଡ଼ି ଯିଏ ଚାଲିଯାଏ, ସେ କୃତଘ୍ନ। ତା'ର ନର୍କବାସ ଅନିବାର୍ଯ୍ୟ।"

ଅନ୍ତଲେଖା କହିଲା, "ମିତ୍ରକୁ ବିପଦରୁ ମୁକ୍ତ କରିବାର ଶକ୍ତି ଥାଇ ଯଦି କେହି ତାକୁ ଛାଡ଼ି ଚାଲିଯିବ ତେବେ ସେ ଅନ୍ୟାୟ କରିବ, ସନ୍ଦେହ ନାହିଁ। କିନ୍ତୁ ଏଠାରେ ଅବସ୍ଥା ଭିନ୍ନ। ତୁମକୁ ମୂଳରୁ ଏତେ ଲୋଭ ନ କରିବା ପାଇଁ ତାଗିଦା ଦେଲି। ତୁମେ ଶୁଣିଲ ନାହିଁ। ଫଳରେ ବିପଦରେ ପଡ଼ିଲ। ସେ ଯାହାହେଉ, ତୁମକୁ ଏ ଅଦ୍ଭୁତ ବିପଦରୁ ମୁକୁଳାଇବା ଭଳି ଶକ୍ତି ମୋର ଅଛି କି? ମୋର କାହିଁକି, କୌଣସି ମଣିଷର ନାହିଁ। ପୁଣି କେବେ ଏ ଜଳନ୍ତା ଚକ୍ର



ଆଉ କାହା ମୁଣ୍ଡକୁ ଗଲେ ଯାଇ ତୁମେ ମୁକ୍ତ ହେବ । ସେତେଦିନଯାଏ ମୁଁ ଏଠାରେ କ'ଣ କରୁଥିବି ? ଖାଲି ତୁମ ଦୁଃଖ ଦେଖି ନିଜେ ଦୁଃଖ ପାଇବା ଛଡ଼ା ତୁମର କୌଣସି ଉପକାର କରିପାରିବି କି ?"

ଅତ୍ୟନ୍ତଲୋଭୀ ଦୀର୍ଘଶ୍ୱାସ ଛାଡ଼ି କହିଲା, "ହେଉ ତେବେ, ଯାଅ । ଘରେ ଆନନ୍ଦରେ ରୁହ । ମୋର ଦୁର୍ଦ୍ଦଶା କଥା ମୋ ପରିବାରର ଲୋକଙ୍କୁ ଜଣାଇଦେବ ।"

ଅତିଲୋଭୀ ଅଶ୍ରୁପୂର୍ଣ୍ଣ ଲୋଚନରେ ଅତ୍ୟନ୍ତଲୋଭୀକୁ ସେହି ଦୁର୍ଗମ ଅଞ୍ଚଳରେ ଛାଡ଼ି ଲୋକାଳୟକୁ ଚାଲିଗଲା ।

ହୁଏତ ଦୀର୍ଘକାଳ ପରେ ଆଉ କେହି ଲୋଭୀ ଲୋକ ସେ ଅଞ୍ଚଳରେ ପ୍ରବେଶ କରିଥିବ; ଅତ୍ୟନ୍ତଲୋଭୀକୁ ତା' ଅବସ୍ଥା ସମ୍ପର୍କରେ ପ୍ରଶ୍ନ କରିଥିବ । ସେତେବେଳେ ସେ ଜଳନ୍ତାଚକ୍ର ଅତ୍ୟନ୍ତଲୋଭୀକୁ ଛାଡ଼ି ଆଗନ୍ତୁକ ମୁଣ୍ଡକୁ ଡେଇଁ ପଡ଼ିଥିବ । ତେବେ ତାହା କେତେବର୍ଷ ପରେ ଘଟିଥିବ, ସେତେବେଳକୁ ଅତ୍ୟନ୍ତଲୋଭୀର ପରିବାରରେ କେହି ଥିବେ କି ନାହିଁ, ଏସବୁ କହିବା ସମ୍ଭବପର ନୁହେଁ । ଏଣେ ତିନିବନ୍ଧୁ ଅର୍ଥ ଅନ୍ୱେଷଣରେ ବାହାରିଥିଲେ । ଦୁଇଜଣ ନିଜ ନିଜ ଆବଶ୍ୟକତା ଅନୁସାରେ ଅର୍ଥ ପାଇ ସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ଅତ୍ୟନ୍ତଲୋଭୀର ଲୋଭର ସୀମା ନ ଥିଲା । ଏହାହିଁ ହେଲା ତା'ର ପରିଣତି !

## ବୁଢ଼ାବାଘ ଓ ପଥିକ

ଦକ୍ଷିଣ ଅଞ୍ଚଳର ଗୋଟିଏ ବଣ ଭିତରେ ବାଘଟିଏ ଥାଏ । ସେ କ୍ରମେ ବୁଢ଼ା ହୋଇଯିବାରୁ ଆଉ ଦୌଡ଼ାଦୌଡ଼ି କରି ଶିକାର ଧରିପାରୁ ନ ଥାଏ । ଥରେ ଥରେ ତାକୁ ଅନାହାରରେ ଦିନ କଟାଇବାକୁ ପଡ଼ୁଥାଏ ।

ପୂର୍ବରୁ ସେ ମାରିଥିବା କୌଣସି ପଥିକର ସୁବର୍ଣ୍ଣ କଙ୍କଣଟିଏ ତା' ପାଖରେ ଥାଏ । କଙ୍କଣଟି ରଖି ସେ ଗୋଟିଏ ସରୋବର କୂଳରେ ବସିରହି ପଥିକମାନଙ୍କୁ ଅପେକ୍ଷା କରୁଥାଏ ।

ସରୋବରର କୂଳ ଦେଇ ରାସ୍ତା ଯାଇଥାଏ । କୌଣସି ପଥିକ ପାଖେଇଆସିଲେ ବାଘ କହେ, "ଆସ, ଆସ, ମୋ ପାଖରୁ ଦାନ ରୂପେ ସୁବର୍ଣ୍ଣ କଙ୍କଣଟିଏ ଗ୍ରହଣ କରି ମୋତେ ପୁଣ୍ୟ ଅର୍ଜନ କରିବାର ସୁଯୋଗ ଦିଅ ।"

କିନ୍ତୁ ବାଘକୁ ଦୂରରୁ ଦେଖିବା ମାତ୍ରେ ପଥିକମାନେ ବାଟଭାଙ୍ଗି ଚାଲିଯାଉଥିଲେ । ଯେଉଁମାନେ ବାଘର ନିବେଦନ ଶୁଣୁଥିଲେ, ସେମାନେ ବି ତା' ପାଖକୁ ଯାଇ ଦାନ ଗ୍ରହଣ କରିବା ଦିଗରେ କୌଣସି ଆଗ୍ରହ ଦେଖାଉ ନ ଥିଲେ ।

କିନ୍ତୁ ଦିନେ ଜଣେ ପଥିକ କୌତୂହଳୀ ହୋଇ ପଚାରିଲା, "ସୁବର୍ଣ୍ଣ କଙ୍କଣ କାହିଁ ?"

ବାଘ ସଙ୍ଗେ ସଙ୍ଗେ କଙ୍କଣ ବାହାର କରି ଦେଖାଇଲା । ପଥିକର ଲୋଭ ହେଲା । ସେ ଭାବିଲା, "ହୁଏତ ବାଘ ସତରେ ପୁଣ୍ୟ କରିବାକୁ ଚାହେଁ । ମୁଁ ନ ନେଲେ ଆଉ କେହି କଙ୍କଣ ନେଇଯିବ । ଆଗରେ ସୁଯୋଗ ଆସି ଜୁଟିବା ସତ୍ତ୍ୱେ ତାକୁ ଛାଡ଼ି ଚାଲିଯିବା ବୋକାମି ହେବ ନାହିଁ କି ?"

ତେବେ ସେ ବାଘକୁ ପଚାରିଲା, "ତୁମ ଭଳି ଜୀବ ପାଖକୁ ଯିବି କେଉଁ ସାହାସରେ ?"

ବାଘ କହିଲା, "ଆହା ! ତୁମେ ଯଦି ମୋ ହୃଦୟରେ କ'ଣ ଅଛି ଜାଣନ୍ତ, ତେବେ ଏମିତି କହନ୍ତ ନାହିଁ । ଯୌବନ କାଳରେ ମୁଁ କେତେ ମଣିଷ ମାରିଛି, ତା'ର ହିସାବ ନାହିଁ । ସେ-



ପାଇଁ ବୃଦ୍ଧ ବୟସରେ ମୋତେ ବହୁତ ଅନୁତାପ କରିବାକୁ ପଡ଼ିଲାଣି । ଜଣେ ସାଧୁ ମୋତେ ଦାନ ଧର୍ମ କରିବାର ଉପଦେଶ ଦେଇଛନ୍ତି । ସେଥିପାଇଁ ଯୋଗ୍ୟ ଲୋକର ବାଟ ଚାହିଁ ବସିଛି । ଯଜ୍ଞ, ବେଦାଧ୍ୟୟନ, ଦାନ, ତପ, ସତ୍ୟବ୍ରତ, କ୍ଷମା, ସହନଶୀଳତା ଏବଂ ଲୋଭ-ତ୍ୟାଗ—ଏହି ଅଷ୍ଟ ମାର୍ଗରେ ପୁଣ୍ୟ ମିଳେ । ଏଥିରୁ ଯେତିକି କରିବା ସମ୍ଭବ, ସେତିକି କରୁଛି । ଆସ, ଏ ପବିତ୍ର ସରୋବରରେ ସ୍ନାନ କର ଓ ଦାନ ଗ୍ରହଣ କର । ବାଘ ମଣିଷ ଖାଏ ବୋଲି ଯେଉଁ ଦୁର୍ନିବାର ଲୋକାପବାଦ ଅଛି, ତାହା ସର୍ବଦା ସତ୍ୟ ନୁହେଁ ।

ବାଘର ବାକ୍‌ଚାତୁରୀ ଦେଖି ପଥିକ ତାକୁ ଅତ୍ୟନ୍ତ ଜ୍ଞାନୀ ବୋଲି ମନେ କଲା ଓ କଙ୍କଣ ଲୋଭରେ ସରୋବରରେ ପ୍ରବେଶ କଲା ।

ସେ ସରୋବର ଅତ୍ୟନ୍ତ ପଙ୍କିଳ । ମୁହୂର୍ତ୍ତକ ଭିତରେ ପଥିକର ପାଦ ଦୁଇଟି ଏମିତି ପୋତି ହୋଇଗଲା ଯେ ସେ ଆଗକୁ ଯାଇ ପାରିଲା ନାହିଁ କି କୂଳକୁ ଉଠି ଆସି ପାରିଲା ନାହିଁ ।"

"ପଙ୍କରେ ପଡ଼ିଗଲ କି ? ରୁହ, ରୁହ ! ତୁମକୁ ଉଠାଇ ଆଣୁଛି ।" ଏହା କହି ବାଘ ଧୀରେ ଧୀରେ ଅଗ୍ରସର ହେଲା ।

ସେତେବେଳେ ବାଘର ମୁଖମଣ୍ଡଳ ଦେଖି ତା'ର ଅସଲ ଉଦ୍ଦେଶ୍ୟ ପଥିକ ବୁଝିପାରିଲା । ସେ ନିଜକୁ କହିଲା, "ହାୟ, ଲୋଭରେ ପଡ଼ି କେଡ଼େ ମୂର୍ଖତା ନ କଲି ! ଯାହାର ସ୍ୱଭାବ ଦୁଷ୍ଟ, ସେ ଶାସ୍ତ୍ର ଆଉଡ଼ାଇ ପାରିଲେ କି ମହାତ୍ମା ହୋଇଯିବ ! ମୁଁ କାହିଁକି ସତର୍କ ନ ହେଲି ? ଆକାଶରେ ବିଚରଣ କରୁଥିବା ଚନ୍ଦ୍ରକୁ ବି ତ ସବୁ ହାବୁଡ଼ରେ ପଡ଼ିବାକୁ ହୁଏ ! ମୁଁ ଛାର ଲୋକଟାଏ କିପରି ବାଘ କବଳରୁ ଖସିଯିବି ବୋଲି ଭାବିଲି ?"

ରହୁଁ ରହୁଁ ବାଘ ଆସି ତାକୁ ଧରିନେଲା ଓ କୂଳକୁ ଟାଣିନେଇ ଖାଇଦେଲା ।





# ଭଲ୍ଲୁକ ତାନ୍ତ୍ରିକ

[ ୨୨ ]

[ସାମନ୍ତ ସୂର୍ଯ୍ୟଭୂପତି ନିଜ ଦୁର୍ଗ ରକ୍ଷା କରିବାକୁ ଚାଲିଗଲା । ମାସ୍ୟାମର୍କଟ ପ୍ରାଚୀର ଟପି କୁଆଡ଼େ ପଳାଇଗଲା । ଭଲ୍ଲୂକତାନ୍ତ୍ରିକ ସୁଡ଼ଙ୍ଗ ମାର୍ଗରେ ପ୍ରବେଶ କରିବାକୁ ଯାଉଥିଲେ, ଘାତକଭଲ୍ଲୂକ ତାଙ୍କ ପଥରୋଧ କଲା । ଭଲ୍ଲୂକତାନ୍ତ୍ରିକ ସେଇଠୁ ତା' ମୁଣ୍ଡରେ ମନ୍ତ୍ରଦଣ୍ଡ ଛୁଆଁଇଦେଇ ସୁଡ଼ଙ୍ଗ ଭିତରକୁ ଚାଲିଗଲେ । ଘାତକଭଲ୍ଲୂକର ଭାଲୁମୁଣ୍ଡ ସ୍ୱାଭାବିକ ମୁଣ୍ଡରେ ପରିଣତ ହେଲା । ତା'ପରେ···]

ଭଲ୍ଲୂକତାନ୍ତ୍ରିକ ଚାଲିଯିବା ପରେ ରାଜା ଜିତକେତୁ ରବିବର୍ମା ଉପରେ ଦୃଷ୍ଟିପାତ କରି କହିଲେ, "ବର୍ତ୍ତମାନ ଆମର କର୍ତ୍ତବ୍ୟ କ'ଣ ? ସମସ୍ତଙ୍କ ଆଗରେ ମୁଁ ସାମନ୍ତ ସୂର୍ଯ୍ୟଭୂପତିର କନ୍ୟାକୁ ମୋର ପୋଷ୍ୟପୁତ୍ରୀ ରୂପେ ଗ୍ରହଣ କଲି ବୋଲି ଘୋଷଣା କରିଛି । ବର୍ତ୍ତମାନ ମାସ୍ୟାମର୍କଟର ଗୁରୁ ମିଥ୍ୟାମିଶ୍ର କବଳରେ ପଡ଼ିଥିବ ମୋର କନ୍ୟା । ବର୍ତ୍ତମାନ ବଣ ଭିତର ଦେଇ ଆମେ ସୂର୍ଯ୍ୟଭୂପତିର ଦୁର୍ଗଆଡ଼େ ଅଗ୍ରସର ହୋଇ ତାକୁ ରକ୍ଷା କରିବା ଉଚିତ ହେବ ନାହିଁ କି ?"

"ମହାରାଜ, ଆମେ ସମସ୍ତେ ଆପଣଙ୍କ ସହିତ ଗଲେ, ମିଥ୍ୟାମିଶ୍ର ଜାଣିପାରି ସତର୍କ ହୋଇଯିବ ।" ଏହା କହି ରବିବର୍ମା ସେଠାରୁ ଅଦୃ-



ବାଦନ କରି ଚାଲିଗଲେ ।

ରତ୍ନବର୍ମାଙ୍କୁ ଅନୁସରଣ କଲେ ରାକ୍ଷସ ଉଗ୍ରଦଣ୍ଡ ତଥା ଘାତକଭଲ୍ଲୂକ । ବର୍ତ୍ତମାନ ଅବଶ୍ୟ ଘାତକଭଲ୍ଲୂକ ପୁଣି ନଗରର ପ୍ରଧାନ ଘାତକ ବେଶରେ ପରିଣତ ହୋଇଯାଇଥିଲା ।

ଶୂନ୍ୟବୈରାଗୀ କହିଲା, "ମହାରାଜ, ଆମେ ବି ଚାଲିଲୁ । ସୁଡ଼ଙ୍ଗ ପଥର ଅନ୍ୟ ମୁହଁରେ ପହରା ଦେବୁ ।" ସେ ଓ ତା'ର ଦୁଇ ଶିଷ୍ୟ ପ୍ରସ୍ଥାନ କଲେ ।

ରତ୍ନବର୍ମା, ଘାତକ ତଥା ଉଗ୍ରଦଣ୍ଡ ଯାଇ ବଣରେ ପହଞ୍ଚିଛନ୍ତି, ସେମାନଙ୍କ ଆଖିରେ ଗୋଟିଏ ଅଦ୍ଭୁତ ଦୃଶ୍ୟ ପଡ଼ିଲା । ଗୋଟାଏ ପ୍ରକାଣ୍ଡ ଭାଲୁ କେତେ ଫଳମୂଳ ଲତାରେ ବାନ୍ଧି ତାକୁ କାନ୍ଧରେ ପକାଇ ଚାଲିଯାଉଥିଲା ।

ତାହା ଦେଖି ରତ୍ନବର୍ମା କହିଲେ, "ଉଗ୍ରଦଣ୍ଡ, ଇଏ ଫେର୍ କିଏ ?"

"ଇଏ ମିଥ୍ୟାମିଶ୍ରର ପୋଷାଭାଲୁ । ଆମେ ଯଦି ଚୁପ୍‌ଚାପ୍ ଏହାର ଅନୁସରଣ କରିବୁ, ତେବେ ତାନ୍ତ୍ରିକର ସନ୍ଧାନ ପାଇଯିବା ।" ଉଗ୍ରଦଣ୍ଡ କହିଲା ।

ଅଗନା-ଗଣନ ବନସ୍ତ ଭିତରେ ବାଟ ପାଇବା ସହଜ ନ ଥିଲା । କାହିଁ କେତେ କାଳରୁ ସାଧାରଣ ମଣିଷ ସେ ବଣ ଭିତରେ ପଶୁ ନ ଥିଲେ । ଅବଶ୍ୟ ମଧ୍ୟେ ମଧ୍ୟେ ରାଜାଙ୍କ ସୈନ୍ୟ ସାମନ୍ତମାନେ ସେ ଅଞ୍ଚଳକୁ ଆସୁଥିଲେ । ଚୋର ଡାକୁମାନେ ତ ଆସିବା ସ୍ୱାଭାବିକ ! ସେ ଅଞ୍ଚଳରେ ପକ୍ଷୀ ବେଶୀ ରହୁଥିଲେ । ସେଥିରୁ ମନେ ହେଉଥିଲା, ବାଘ ଭାଲୁ ବା ବଣୁଆ ହାତୀମାନେ ସେ ଅଞ୍ଚଳକୁ ବିଶେଷ ଆସୁ ନ ଥିଲେ । କାରଣ ଯେଉଁ ଅଞ୍ଚଳରେ ଭୟଙ୍କର ହିଂସ୍ର ପଶୁମାନେ ବିଚରଣ କରନ୍ତି, ପକ୍ଷୀମାନେ ଭୟଭୀତ ହୋଇ ସେ ଅଞ୍ଚଳରୁ ଦୂରେଇ ରହନ୍ତି । କିନ୍ତୁ ବିଷଧର ସର୍ପମାନେ ଥିବାର ଜଣା ପଡ଼ୁଥିଲା ।

ଭାଲୁ ଅକ୍ଳେଶରେ ଲତା ବୁଦା ଭିତର ଦେଇ ନିଜ ପାଇଁ ବାଟ କରିନେଉଥିଲା । ତେଣୁ



ରତ୍ନବର୍ମା ଓ ଉଗ୍ରଦଣ୍ଡ ପକ୍ଷରେ ଅଗ୍ରସର ହେବା ସହଜ ହେଉଥିଲା । ତେବେ ସେମାନେ ଯଥା ସମ୍ଭବ ସତର୍କ ହୋଇ ବାଟ ଚାଲୁଥା'ନ୍ତି । ଭାଲୁ ଜାଣି ପାରୁ ନ ଥାଏ ।

ସେମାନେ ଭାଲୁ ପଛେ ପଛେ ଅଳ୍ପଦୂର ଯାଇଛନ୍ତି, ଗୋଟିଏ ଗଛ ମୂଳରେ ଭଲ୍ଲୂକ-ତାନ୍ତ୍ରିକ ଓ ଜଣେ ଦାଢ଼ିବାଲ୍ ବୁଢ଼ା ସହ ସାମନ୍ତ ସୂର୍ଯ୍ୟଭୂପତି କଥାବାର୍ତ୍ତା ହେଉଥିବାର ଦେଖିଲେ । ବୁଢ଼ା ଗଳାରେ ରୁଦ୍ରାକ୍ଷ ଥିଲା ।

ରତ୍ନବର୍ମା ଉପରେ ଆଖି ପଡ଼ିବା ମାତ୍ରେ ଭଲ୍ଲୂକତାନ୍ତ୍ରିକ ଠିଆ ହୋଇପଡ଼ି କହିଲେ, "ଆସ ଆସ ରତ୍ନବର୍ମା, ଇଏ ହେଲେ ମୋର ଗୁରୁ ଭଲ୍ଲୂକପାଦ । ସୂର୍ଯ୍ୟଭୂପତିଙ୍କ କନ୍ୟା କାଞ୍ଚନମାଳାକୁ ତାନ୍ତ୍ରିକ ମିଥ୍ୟାମିଶ୍ର ଅପହରଣ କରିନେଇ ପଳାଇଛି । ତୁମେ ଏବେ କ'ଣ କରିବ ଭାବୁଛ ?"

"ଓଃ, ତେବେ ଏ ଭାଲୁ ମିଥ୍ୟାମିଶ୍ରର ପୋଷା ନୁହେଁ, ଭଲ୍ଲୂକପାଦଙ୍କ ଅନୁଚର !" କହିଲା ଘାତକ ।

ଭଲ୍ଲୂକତାନ୍ତ୍ରିକ ଆଗେଇ ଆସି କହିଲା, "ମୁଁ ବୁଝିଲି, ମୋ ଗୁରୁଙ୍କ ଭାଲୁ ତୁମମାନଙ୍କୁ ବାଟ କଢ଼େଇ ଏଠାକୁ ନେଇଆସିପାରିଛି । ମୋ ଗୁରୁଙ୍କୁ ଗୋଟାଏ ଗଛରେ ବାନ୍ଧିରଖି ତାଙ୍କୁ ଉପାସରେ ସେ ତାନ୍ତ୍ରିକ ମାରିବାକୁ ଚାହୁଁଥିଲା । ଗୁରୁଭକ୍ତ ଭାଲୁ ତାଙ୍କ ବନ୍ଧନ ଖୋଲିଦେବାରୁ ସେ ପଳାଇଆସି ପାରିଛନ୍ତି ।"

ବୃଦ୍ଧ ଭଲ୍ଲୂକପାଦଙ୍କୁ କ୍ରୋଧଭରା ଦୃଷ୍ଟିରେ ଅନାଇ ଉଗ୍ରଦଣ୍ଡ ପଚାରିଲା, "ବୃଦ୍ଧ, ମୋ ଭାଇ କାଳଦଣ୍ଡ କାହିଁ ?"

ଭଲ୍ଲୂକପାଦ ଶଙ୍କିତ ନ ହୋଇ ଥରେ ନିଜ ରୁଦ୍ରାକ୍ଷ ଉପରେ ଆଖି ବୁଲାଇନେଇ କହିଲେ, "ଏ ପ୍ରଶ୍ନ ମୋତେ ପଚାରିଲେ କପରି ହେବ ? ତାନ୍ତ୍ରିକ ମିଥ୍ୟାମିଶ୍ର ହିଁ ଏହାର ଉତ୍ତର ଦେଇ ପାରିବ । ସେ ଜଡ଼ିବୁଟି ଦ୍ୱାରା ତୁମ ଭାଇଙ୍କୁ ବଶ କରି ମୁଁ ଯେମିତି ଏ ଭାଲୁକୁ ମୋର ଅନୁଗତ କରିପାରିଛି, ସେମିତି ତାକୁ କରିଛି । ତୁମେ-



ମାନେ ଯଦି ମିଥ୍ୟାମିଶ୍ରଙ୍କୁ ଜବଦ କରିପାରିବ, ତେବେ କାଳଦଣ୍ଡ ମୁକ୍ତି ପାଇବା ସଙ୍ଗେ ସଙ୍ଗେ ରାଜକୁମାରୀ କାଞ୍ଚନମାଳା ବି ଉଦ୍ଧାର ପାଇବେ । ତୁମ ଭିତରେ ଏଭଳି ସାହସୀ କେହି ଅଛନ୍ତି ?"

ରଣବର୍ମା ତରବାରି ଉପରେ ହାତ ରଖି କହିଲେ, "ସାହସୀ ନାହାନ୍ତି କାହିଁକି ? ମୁଁ କାଞ୍ଚନମାଳାକୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ମିଥ୍ୟାମିଶ୍ର ତଥା ତୁମକୁ ବି ଖତମ କରିବି । ଏ ଅଞ୍ଚଳରେ ତୁମ ଭଳି ଦୁଷ୍ଟ ତାନ୍ତ୍ରିକମାନଙ୍କର ସ୍ଥାନ ନାହିଁ ।"

ଭଲ୍ଲୂକତାନ୍ତ୍ରିକ ଏଥିରେ ରାଗିଯାଇ ନିଜ ମନ୍ତ୍ରଦଣ୍ଡ ଉଦ୍ୟତ କରନ୍ତେ ସାମନ୍ତ ସୂର୍ଯ୍ୟଭୂପତି ତାଙ୍କୁ ରୋକି କହିଲେ, "ରଣବର୍ମା, ଏ ଭଲ୍ଲୂକପାଦ ଏବଂ ଏ ଭଲ୍ଲୂକତାନ୍ତ୍ରିକ ଆମର ଶତ୍ରୁ ନୁହନ୍ତି । ଏମାନଙ୍କ ସାହାଯ୍ୟରେ ମୁଁ ମିଥ୍ୟାମିଶ୍ରର ଜଣେ ସେବକକୁ ଧରିଲି । ସେ ମାୟାମର୍କଟ ତା' ଗୁରୁ ମିଥ୍ୟାମିଶ୍ରକୁ ଖୋଜୁଥିବା କଥା ଶଙ୍ଖଧ୍ୱନି ଦ୍ୱାରା ମିଥ୍ୟାମିଶ୍ରକୁ ଜଣାଉଥିଲା । ଏହି ହେଉଛି ସେ ଶଙ୍ଖ । ମିଥ୍ୟାମିଶ୍ର କେଉଁଠି ଅଛି ବୋଲି ଆମେ ତାକୁ ଯେତେ ପଚାରିଲେ ବି ସେ କହିଲା ନାହିଁ । ଫଳରେ ତାକୁ ମାରିଦେଲୁ ।"

ରଣବର୍ମା ଶଙ୍ଖଟିକୁ ଦେଖି ଦୂରକୁ ଫୋପାଡ଼ିଦେଇ କହିଲେ, "ରାଜା ସୂର୍ଯ୍ୟଭୂପତି ! ଆପଣଙ୍କ କନ୍ୟାକୁ ଅପହରଣ କରିଛି ଯେଉଁ ମିଥ୍ୟାମିଶ୍ର, ତାକୁ ଧରି ତା' ପ୍ରାଣଦଣ୍ଡ ଦେବା ଆପଣଙ୍କ କର୍ତ୍ତବ୍ୟ, ତା' ସେବକକୁ ମାରିବାରେ କୌଣସି ଲାଭ ନାହିଁ । ବର୍ତ୍ତମାନ ମୁଁ ସେ ତାନ୍ତ୍ରିକକୁ ଖୋଜିବାକୁ ଚାଲିଲି ।" ରଣବର୍ମା ଏହା କହି ଚାଲିଗଲେ ।

ଭଲ୍ଲୂକପାଦ ସପ୍ରଶଂସ ଭାବରେ ମୁଣ୍ଡ ହଲାଇ ଭଲ୍ଲୂକତାନ୍ତ୍ରିକକୁ କହିଲେ, "ତୁମେ ଗୋଟାଏ ସାହସୀ ଯୁବକ ବାହାର କରିଛ ଦେଖୁଛି । ଚାଲ ଆମେ ବି ସେ ତାନ୍ତ୍ରିକକୁ ମାରିବା ଦିଗରେ କ'ଣ କରାଯାଇପାରେ ଦେଖିବା ।"

ଭଲ୍ଲୂକପାଦ ତା' ବାହନ ଭାଲୁ ଉପରେ

ସବାର ହେଲେ । ତାଙ୍କ ସାଥିରେ ଚାଲିଲେ ଭଲ୍ଲୂକତାନ୍ତ୍ରିକ, ରାକ୍ଷସ ଉଗ୍ରଦଣ୍ଡ, ସାତକ ତଥା ସାମନ୍ତ ସୂର୍ଯ୍ୟଭୂପତି ।

ରବିବର୍ମା ତଳେ ପାଦଚିହ୍ନ ଖୋଜୁଥାନ୍ତି । ଏକ ସ୍ଥାନରେ ସାଧାରଣ ପାଦଚିହ୍ନ ସାଙ୍ଗରେ ଦୁଇତିନିଗୁଣ ବଡ଼ ପାଦଚିହ୍ନ ଦେଖି ଉଗ୍ରଦଣ୍ଡର ଭାଇ କାଳଦଣ୍ଡ କଥା ତାଙ୍କର ମନେ ପଡ଼ିଗଲା ।

ରବିବର୍ମା ତେଣିକି ସାବଧାନରେ ଅଗ୍ରସର ହେଲେ । ଅଳ୍ପଦୂର ଯିବା ପରେ ତାଙ୍କ ଆଖିରେ ଗୋଟିଏ ସରୋବର ପଡ଼ିଲା । ପାଖରେ ଥିଲା ଗୋଟିଏ ଝରଣା ।



ସେ ଆହୁରି ମଧ୍ୟ ଦେଖିଲେ, ଝରଣା କୂଳରେ ତ୍ରିଶୂଳଟିଏ ପୋତା ହୋଇଛି । ସରୋବର ଭିତରେ ଜଣେ ଦୃଢ଼କାୟ ବ୍ୟକ୍ତି ଠିଆ ହୋଇ ଆଖି ବନ୍ଦ କରି ମନ୍ତ୍ର ଜପ କରୁଛି ।

ରବିବର୍ମା ବୁଝିଗଲେ ଯେ ସେହି ହେଲା ତାନ୍ତ୍ରିକ ମିଥ୍ୟାମିଶ୍ର । ସେ ଉଚ୍ଚକଣ୍ଠରେ କହିଲେ, "ତୁହି ଦୁଷ୍ଟ ତାନ୍ତ୍ରିକ ମିଥ୍ୟାମିଶ୍ର କି ? କହ, ସୂର୍ଯ୍ୟଭୂପତିଙ୍କ କନ୍ୟାକୁ କେଉଁଠି ରଖିଛୁ ?"

ମନ୍ତ୍ରପାଠ ବନ୍ଦ କରି ମିଥ୍ୟାମିଶ୍ର ଆଶ୍ଚର୍ଯ୍ୟ ହୋଇ ରବିବର୍ମାଙ୍କ ଆଡ଼କୁ ଅନାଇଲା ଓ ପଚାରିଲା, "ତୁମେ ମୋ ନାମ ଜାଣିଲ କିପରି ? ତୁମେ ବେଶ୍ ଚତୁର ଲୋକ ବୋଲି ମନେହୁଏ । ମୋ ଶିଷ୍ୟ ଭ୍ରାନ୍ତିମତିଠାରୁ ଶୁଣିଲି ମୋର ଜଣେ ସେବକକୁ କେହି ହତ୍ୟା କରିଛି । ତୁମେ ସେ ଲୋକ ନୁହଁ ତ ?"

"ସେସବୁ କଥା ପରେ । ଆଗେ କହ କାଞ୍ଚନମାଳା କେଉଁଠାରେ ?" ଏତିକ କହି ରବିବର୍ମା ତରବାରି ବାହାର କରିବାକୁ ଉଦ୍ୟତ ହେଲେ ।

ସଙ୍ଗେ ସଙ୍ଗେ ପାଖରେ ଗଛଡ଼ାଳରେ ବସିଥିବା ମାୟାମର୍କଟ ଚିତ୍କାର କରି କହିଲା, "ତାନ୍ତ୍ରିକ ଗୁରୁ ! ଏହି ଯୁବକ ହେଲା ରବିବର୍ମା । ଏହାର ପରାକ୍ରମ କମ୍ ନୁହେଁ । ଏହାକୁ ମାରିଦେବାହିଁ ନିରାପଦ !"

ମାୟାମର୍କଟ ଏତିକ କହି ଡାଳରୁ ରବିବର୍ମାଙ୍କ ଆଡ଼କୁ ଲମ୍ଫଦେଲା । ରବିବର୍ମା ତରବାରି



ବାହାର କରିବାକୁ ସମୟ ନ ପାଇ ଆଗରେ ପୋତା ହୋଇଥିବା ତ୍ରିଶୂଳକୁ ଉପାଡ଼ିନେଲେ ଓ ମାୟାମର୍କଟ ଆଡ଼େ ଦେଖାଇଲେ । ମାୟାମର୍କଟ ତ୍ରିଶୂଳ ଉପରେ ପଡ଼ିଲା । ତ୍ରିଶୂଳ ରତ୍ନବର୍ମାଙ୍କ ହାତରୁ ଖସିଗଲା । ମାୟାମର୍କଟ ତଳେ ଗଡ଼ିଯାଇ ଯନ୍ତ୍ରଣାକାତର କଣ୍ଠରେ କହିଲା, "ତାନ୍ତ୍ରିକଗୁରୁଙ୍କର ଜୟ ! ପରଜନ୍ମରେ ଯେପରି ତୁମରି ସେବା କରିବି !" ଏତିକି କହି ସେ ନିଶ୍ଚେଷ୍ଟ ହୋଇଗଲା ।

ରତ୍ନବର୍ମା ତାଙ୍କର ତରବାରି ବାହାର କଲେ ଓ ମିଥ୍ୟାମିଶ୍ର ଉଦ୍ଦେଶ୍ୟରେ କହିଲେ, "ଶୁଣ ତାନ୍ତ୍ରିକ ! ଯେଉଁ ଭଲ୍ଲୂକେଶ୍ୱରଙ୍କୁ ତୁ ଉପାସନା କରୁ, ତାଙ୍କର ନାମରେ ତୋତେ ବଳି ଦେବି । ତେବେ ପ୍ରଥମେ ତୋ ପାଖରୁ ଜାଣିବାକୁ ଚାହେଁ — କାଞ୍ଚନମାଳା କାହାନ୍ତି ।"

ତାନ୍ତ୍ରିକ କିଛି ନ କହି ମୃଦୁହାସ୍ୟ କରି ନିଜ ମୁଠି ଖୋଲିଲା ଓ ବନ୍ଦ କଲା । ସଙ୍ଗେ ସଙ୍ଗେ ମୁଣ୍ଡ ବୁଲାଇଲା ଦୁଇ ଚାରି ଥର । ରତ୍ନବର୍ମା ତା'ର ସେ ବିଚିତ୍ର ବ୍ୟବହାରରେ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ବିରକ୍ତ ହୋଇ ସରୋବରକୁ ଓହ୍ଲାଇବାକୁ ଯାଉଛନ୍ତି, ଶୁଭିଲା ଏକ ନାରୀକଣ୍ଠ, "ଯୁବକ, ସାବଧାନ ! ତାନ୍ତ୍ରିକ ଗୋଟାଏ ମୂକ ରାକ୍ଷସକୁ କୌଣସି ଇସାରା ଦେଉଛି ।"

ରତ୍ନବର୍ମା ବ୍ୟାକୁଳ ଗତିରେ ବୁଲିପଡ଼ି ପଛକୁ ଅନାଇ ଦେଖିଲେ ଉଗ୍ରଚଣ୍ଡ ଆକୃତିର ଗୋଟାଏ ରାକ୍ଷସ ଜଣେ ଯୁବତୀକୁ ନିଜ କାନ୍ଧରୁ ଓହ୍ଲାଇଦେଉଛି । ହୁଁ ହୁଁ ସେ ରାକ୍ଷସ ହୁଙ୍କାର ଦେଇ ପଥର ଗଦା ଉଞ୍ଚାଇ ରତ୍ନବର୍ମା ଆଡ଼କୁ ଦୌଡ଼ିଆସିଲା । ରତ୍ନବର୍ମା ଚଟ୍‌କିନା ଘୁଞ୍ଚିଗଲେ । ସରୋବର ତୀରରେ ପାଦ ଖସିଯିବାରୁ ରାକ୍ଷସ ମୁହଁମାଡ଼ି ପାଣିରେ ପଡ଼ିଗଲା । ତା' ହାତରୁ ଛିଟିକିଯାଇ ଗଦା କୂଳରେ ପଡ଼ିରହିଲା ।

ରାକ୍ଷସ ଗର୍ଜନ କରି ସରୋବରରୁ ଉଠିବାକୁ ଚେଷ୍ଟା କଲା । କିନ୍ତୁ ରତ୍ନବର୍ମା ଦୌଡ଼ିଯାଇ ଗଦାଟି ଉଠାଇଆଣି ତା' ଉପରେ ପ୍ରଚଣ୍ଡ

ପ୍ରହାର ବସାଇଦେଲେ । ରାକ୍ଷସ ଅଚେତ ହୋଇ ତଳେପଡ଼ିଲା ।

ତାନ୍ତ୍ରିକ ମିଥ୍ୟାମିଶ୍ର କ ଉପାୟରେ ସେଠାରୁ ପଳାଇବ, ସେଥିପାଇଁ ଏଣେତେଣେ ଚାହୁଁଥାଏ । ରତ୍ନବର୍ମା ଥରେ ତୀବ୍ର ଦୃଷ୍ଟିରେ ତାକୁ ଦେଖିନେଇ ତା'ପରେ ଯୁବତୀକୁ ପଚାରିଲେ, "ତୁମେହିଁ ସୂର୍ଯ୍ୟଭୂପତିଙ୍କ କନ୍ୟା କାଞ୍ଚନମାଳା କି ?"

ଯୁବତୀ ସମର୍ଥନସୂଚକ ଭଙ୍ଗୀରେ ମୁଣ୍ଡ ହଲାଇ କହିଲେ, "ତାନ୍ତ୍ରିକର ଦୁଇ ସେବକ ମରିଛନ୍ତି ବୋଲି ମନେହୁଏ । କିନ୍ତୁ ତାନ୍ତ୍ରିକକୁ ଛାଡ଼ିଦେଲେ ଚଳିବ ନାହିଁ । ମୋ ହାତରେ ଅସ୍ତ୍ର ନାହିଁ । ତୁମ ତରବାରି ମୋତେ ଦିଅ । ତୁମେ ଗଦା ଚାଳନା କର । ଦୁହେଁ ତାନ୍ତ୍ରିକକୁ ଦେଖି-ନେବା ।"



ରତ୍ନବର୍ମା ଆନନ୍ଦରେ ରାଜକୁମାରୀ ହାତକୁ ତରବାରି ବଢ଼ାଇଦେଲେ । ନିଜେ ଗଦା ଧରି ସରୋବର ଭିତରକୁ ଯିବାକୁ ବାହାରିଲେ । ସେତିକିବେଳେ ସେଠାରେ ପହଞ୍ଚିଗଲେ ରାଜା ଜିତକେତୁ । ସେ ରତ୍ନବର୍ମାଙ୍କୁ ସତର୍କ କରିଦେଇ କହିଲେ, "ଏ ସରୋବରରେ କୁମ୍ଭୀର ଭର୍ତ୍ତି । ତୁମେ ଭିତରକୁ ଯାଅ ନାହିଁ । ମୋ ସୈନ୍ୟ, ଘାତକ ଏବଂ ରାକ୍ଷସ ଉଗ୍ରଦଣ୍ଡ ପଛେ ପଛେ ଆସୁଛନ୍ତି । ସେମାନେ ତାନ୍ତ୍ରିକକୁ ବଧ କରିବେ ।"

କାଞ୍ଚନମାଳା ବିସ୍ମୟରେ ସମସ୍ତଙ୍କୁ ଦେଖୁ-ଥାନ୍ତି । ରାଜା ତାଙ୍କ ପାଖକୁ ଯାଇ କହିଲେ, "ଝିଅ ! ତୁ ମୋର ପୋଷ୍ୟପୁତ୍ରୀ । ତେଣୁ ତୋ ପାଇଁ ଉପଯୁକ୍ତ ବର ଠିକ୍ କରିବାର ଅଧିକାର ମୋର ଅଛି । ନୁହେଁ ?"

କାଞ୍ଚନମାଳା ଲଜ୍ଜାରେ ଜଡ଼ବତ୍ ଠିଆ ହୋଇ ରହିଲେ । ଚାହୁଁ ଚାହୁଁ ପହଞ୍ଚିଗଲେ ସୂର୍ଯ୍ୟଭୂପତି, ଭଲ୍ଲୂକପାଦ, ଭଲ୍ଲୂକତାନ୍ତ୍ରିକ, ଘାତକ ତଥା ରାକ୍ଷସ ଉଗ୍ରଦଣ୍ଡ ।

ସୂର୍ଯ୍ୟଭୂପତି କାଞ୍ଚନମାଳା ପାଖକୁ ଦୌଡ଼ି-ଯାଇ କହିଲେ, "ଝିଅ, ତୋତେ ପ୍ରାଣରେ ଦେଖିପାରିବି କି ନା ତାହା ସନ୍ଦେହ ଥିଲା ।" ତା'ପରେ ରତ୍ନବର୍ମାଙ୍କୁ ଅନାଇ ସେ କହିଲେ,

"ତୁମେ ମହାନ ବୀର । ଏଥିରେ ସନ୍ଦେହ ନାହିଁ ।"

ରାଜା ଜିତକେତୁ ଅତ୍ୟନ୍ତ ଉତ୍‌ଫୁଲ୍ଲ ଭାବରେ ରବିବର୍ମାଙ୍କ ହାତଧରି କାଞ୍ଚନମାଳାଙ୍କ ପାଖକୁ ନେଇଯାଇ ଉଚ୍ଚକଣ୍ଠରେ କହିଲେ, "ମୋର ଏହି ପୋଷ୍ୟକନ୍ୟା କାଞ୍ଚନମାଳା ସହ ବୀର ଯୁବକ ରବିବର୍ମାଙ୍କ ବିବାହ ଦେବାର ଘୋଷଣା କରୁଛି । ଆପଣମାନେ ସମସ୍ତେ ସାକ୍ଷୀ । ମୋ ଅନ୍ତେ ରବିବର୍ମା ହେବେ ଚନ୍ଦ୍ରଶିଳା ନଗରୀର ରାଜା ।

ସମସ୍ତେ ହର୍ଷନାଦ କଲେ । ସେତିକିବେଳେ ସରୋବର ଭିତରୁ ଚିତ୍କାର ଶୁଭିଲା । ଦେଖିଲା ବେଳକୁ ମିଥ୍ୟାମିଶ୍ର ଗୋଟାଏ ପ୍ରକାଣ୍ଡ କୁମ୍ଭୀର କବଳରେ ପଡ଼ିଛି । ଭଲ୍ଲୂକତାନ୍ତ୍ରିକ ନିଜ ମନ୍ତ୍ରଦଣ୍ଡ ହଲାଇ କହିଲା, "ଭଲ୍ଲୂକପାଦ ! ତୁମର ଶେଷକୁ ଏହିଦଶା ହେଲା ? କୁମ୍ଭୀରର ଆହାର ହେବାକୁ ଯାଉଛ ?"

ହୁଁ ହୁଁ କୁମ୍ଭୀର ମିଥ୍ୟାମିଶ୍ରକୁ ଟାଣି-ନେଇ ଜଳ ଭିତରକୁ ଅଦୃଶ୍ୟ ହୋଇଗଲା ।

ଉଗ୍ରଦଣ୍ଡ ସେଠାରେ ଛିଡ଼ାଥିବା କାଳଦଣ୍ଡକୁ ଉଠାଇ ତା' କାନ ପାଖରେ କହିଲା, "ଭାଇ ! ତୁମକୁ ଯାଦୁ କରି ରଖିଥିବା ତାନ୍ତ୍ରିକ ମଲାଣି । ସେ ମରିବା ସଙ୍ଗେ ସଙ୍ଗେ ତୁମେ ତା' ପ୍ରଭାବରୁ ମୁକ୍ତ ହେବା କଥା । ତୁମକୁ ସେ ମୂକ ବନାଇ ରଖିଥିଲା । ଚେଷ୍ଟା କର । ଏଥର କଥା କହି ପାରିବ ।"

କାଳଦଣ୍ଡ ଆଖି ଖୋଲି ଉଗ୍ରଦଣ୍ଡକୁ କୁଣ୍ଢାଇ ପକାଇ କହିଲା, "ମୋ ସାନଭାଇ ! ତୋତେ ଏ ଆଖି ଦେଖିଲା ! ସେ ଦୁଷ୍ଟ ତାନ୍ତ୍ରିକ ମୋତେ ବହୁତ କଲବଲ କରିଛି । କିନ୍ତୁ ତାକୁ ଜବଦ କଲା ଭଳି ଏ ଯୁବକ କିଏ ?"

ଏହା କହି କାଳଦଣ୍ଡ ଆଗକୁ ଯାଇ ରବିବର୍ମା ଓ କାଞ୍ଚନମାଳାଙ୍କୁ ଦୁଇ କାନ୍ଧରେ ବସାଇ ଆନନ୍ଦରେ ଠିଆ ହେଲା ।

ସମସ୍ତେ ହର୍ଷଧ୍ୱନି କଲେ । (ସମାପ୍ତ)





# ଅଦ୍ଭୁତ ବିଦ୍ୟା

ବିକ୍ରମାର୍କ ପୁନର୍ବାର ବୃକ୍ଷ ପାଖକୁ ଲେଉଟି ଆସିଲେ । ଝଡ଼ବତାସ ପ୍ରେତାତ୍ମାମାନଙ୍କର ଅଟ୍ଟହାସ୍ୟ—ଏସବୁ ପ୍ରତି ତିଳେ ମଧ୍ୟ ଭ୍ରୂକ୍ଷେପ ନ କରି ସେ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ ।

କିନ୍ତୁ ତାକୁ କାନ୍ଧରେ ପକାଇ ଶୂନ୍ଶାନ୍ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ କୌଣସି ଅଦ୍ଭୁତ ଶକ୍ତି ଆୟତ୍ତ କରିବା ମାନସରେ ଏଭଳି ଦୁଃସାଧ୍ୟ ଶ୍ରମ କରୁଛ କି ? ତାହାହିଁ ଯଦି ହୋଇଥାଏ, ତେବେ ତୁମ ଉଦ୍ଦେଶ୍ୟ ମନ୍ଦ ନୁହେଁ । କୌଣସି ଅଦ୍ଭୁତ ଲାଭ କଲେ ତାହା ଦ୍ୱାରା ତୁମେ ହୁଏତ ପରର ଉପକାର କରିପାରିବ । କିନ୍ତୁ ସେଥିରେ ବି ସମସ୍ୟା ଅଛି । ରାମସିଂହ ସେହିଭଳି କିଛି

ବେତାଳ କଥା



ଅଲୌକିକ ଶକ୍ତି ପାଇଥିଲା । କିନ୍ତୁ ପରିଣାମ କ'ଣ ହେଲା ? କହୁଛି ସେ କଥା, ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ଶ୍ୟାମସିଂହ ଥିଲା ଜଣେ କୃଷକ । ସେ କଠୋର ମେହେନତ କରି ନିଜ ପୈତୃକ ଜମିଜମାକୁ କିଛି ବଢ଼ାଇଥାଏ । ଥରେ ବହୁଦିନର ଖଣ୍ଡିଏ ପଡ଼ିଆ ଜମି ସେ ଅଳ୍ପ ଦାମରେ କିଣି ସେଥିରେ କିଛି ଫସଲ କରିବା ସକାଶେ ଲାଗିପଡ଼ିଥାଏ । ଦିନେ କୋଦାଳ ଯୋଗେ ମାଟି ହାଣୁଥିବା ବେଳେ କୌଣସି ପଥୁରିଆ ଜିନ ତା' କୋଦାଳରେ ଲାଗିଲା । ସେ ସାବଧାନରେ ସେ ସ୍ଥାନ ଖୋଳି ଦେଖେ ତ ଖଣ୍ଡିଏ ପଥର ତଳେ ଗୋଟିଏ ପାତ୍ର ରହିଛି । ପାତ୍ରର ମୁହଁ ଖୋଲି ତା'ର ବିସ୍ମୟର ସୀମା ରହିଲା ନାହିଁ । ତହିଁ ଭିତରେ ଗୋଟିଏ ସୁନା-ହାର ସମେତ ଖଣ୍ଡିଏ ତାଳପତ୍ର ଉପରେ କିଛି ଲେଖା ରହିଥିଲା । ଶ୍ୟାମସିଂହ ହାର ଓ ତାଳପତ୍ର ଘରକୁ ନେଇଆସିଲା । ମନ ଦେଇ ତାଳପତ୍ରର ଲେଖା ପଢ଼ିଲା । ତାହା ଥିଲା ଅନେକ ବର୍ଷ ତଳର ଜଣେ ଲୋକର ଆତ୍ମକଥା । ଲୋକଟି କୌଣସି ଯୋଗୀଙ୍କ କୃପାରୁ ଗୋଟିଏ ଅଦ୍ଭୁତ ହାର ପାଇଥିଲା । ସେ ହାର ପିନ୍ଧି ଯାହାକୁ ଭେଟିବ, ତା' ମନ କଥା ଜଣାପଡ଼ିଯିବ । ଲୋକଟି ହାର ପିନ୍ଧି କେତେକ ଧନୀ ଓ ବିଶିଷ୍ଟ ଲୋକଙ୍କର ଦୁରଭିସନ୍ଧିମାନ ଜାଣିପକାଇ ସେସବୁ ପ୍ରକାଶ କରିଦେବ ବୋଲି ଧମକ ଦେଲା । ସେସବୁ ଲୋକେ ଗୋପନରେ ତାକୁ ଧନ ସମ୍ପଦ ଦେଇ ତା' ମୁହଁ ବନ୍ଦ କରି ରଖିଲେ । ଏହିପରି ଭାବରେ ଲୋକଟି ଆରାମରେ ଚଳିଲା । କିନ୍ତୁ ଦିନେ ସେ ତା' ସ୍ତ୍ରୀର ମନକଥା ଜାଣିପକାଇଲା । ସ୍ତ୍ରୀ ତା' ପ୍ରତି ନୁହେଁ, ଆଉ ଜଣକ ପ୍ରତି ଅନୁରକ୍ତା । ସେ ସ୍ତ୍ରୀକୁ ମାରିଦେଲା । ତା'ପରେ ହାର ପ୍ରତି ତଥା ଜୀବନ ପ୍ରତି ବୀତ-ସ୍ପୃହ ହୋଇଗଲା । ହାର ସହ ଏ ଆତ୍ମକଥା ପୋତିଦେଇ ସେ ବଣକୁ ଚାଲିଗଲା ।

ଶ୍ୟାମସିଂହ ଏ କାହାଣୀ ପଢ଼ି ଯେତିକି ବିସ୍ମିତ

ହେଲା, ସେତିକି କୌତୂହଳୀ ହେଲା । ପ୍ରଥମେ ସେ ହାରର ଏପରି ମହିମା ଅଛି ବୋଲି ପରଖି ପାରିଲା ନାହିଁ । ଯାହାହେଉ, ହାରଟି ବେକରେ ପକାଇ ସେ ଗାଁ ଭିତରକୁ ବାହାରିଗଲା ।

ଜମିଦାରଙ୍କର ଜଣେ ଜ୍ଞାତି ଲମ୍ବୁସିଂହ ପାଖରୁ ସେ କିଛି ଟଙ୍କା କରଜ କରିଥାଏ । ସେଦିନ ସେ ଟଙ୍କା ପରିଶୋଧ କରିବାକୁ ଗଲା । ଲମ୍ବୁ-ସିଂହକୁ ଦେଖିବା ମାତ୍ରେ ସେ ବୁଝିଗଲା ଯେ ଲମ୍ବୁସିଂହ ଜମିଦାରଙ୍କୁ ହତ୍ୟା କରିବାର ଚକ୍ରାନ୍ତରେ ଅଛି ।



"ଆହା, ଆମ ଜମିଦାର କେଡ଼େ ଭଲ ଲୋକ !" ଶ୍ୟାମସିଂହ କହିଲା ।

ଲମ୍ବୁସିଂହ ଚମକିପଡ଼ି ଶ୍ୟାମ ଆଡ଼କୁ କଟମଟ କରି ଅନାଇଲା । ଶ୍ୟାମ ନିଶ୍ଚିତ ହେଲା ଯେ ତା' ସନ୍ଦେହ ସତ୍ୟ । କିନ୍ତୁ ସେ ଆଉ ଅଧିକ କିଛି ନ କହି ସେଠୁ ଚାଲିଗଲା ।

ଶ୍ୟାମ ବୁଝିପାରିଥାଏ ଯେ ଜମିଦାର ସାନ୍ଧ୍ୟ-ଭ୍ରମଣରୁ ଫେରିବା ବେଳେ ବଣ ପାଖରେ ତାଙ୍କୁ ମାରିଦେବା ନିମନ୍ତେ ଲମ୍ବୁସିଂହ ଦୁଇଜଣ ଗୁଣ୍ଡା ନିଯୁକ୍ତ କରିଛି । ଶ୍ୟାମ ଧୀରେ ଧୀରେ ବଣ ପାଖକୁ ଯାଇ ସେ ଦୁଇ ଗୁଣ୍ଡାଙ୍କୁ ହଠାତ୍ ଆଘାତ କଲା । ସେମାନେ ଅଚେତ୍ ହୋଇ ପଡ଼ିଗଲେ । ଶ୍ୟାମ ଦୌଡ଼ି ଦୌଡ଼ି ଯାଇ ଜମିଦାରଙ୍କୁ ଭେଟି କହିଲା କି ତାଙ୍କୁ ହତ୍ୟା କରିବା ସକାଶେ ଲମ୍ବୁ-ସିଂହ ଗୁଣ୍ଡା ଲଗାଇଥିଲା । ଜମିଦାରଙ୍କ ଲୋକେ ଗୁଣ୍ଡା ଦୁହିଁଙ୍କୁ ଧରିନେଇଗଲେ । ମାଡ଼ ଭୟରେ ସେ ଦୁଇଜଣ ଲମ୍ବୁସିଂହ ଦ୍ୱାରା ଜମିଦାରଙ୍କୁ ମାରିବା ସକାଶେ ନିଯୁକ୍ତ ହୋଇଥିବା କଥା ସ୍ୱୀକାର କଲେ ।

ଲମ୍ବୁସିଂହ ପଳାଇଗଲା । ତେବେ ତାଙ୍କ ପ୍ରାଣରକ୍ଷା କରିଥିବା ହେତୁ ଜମିଦାର ଶ୍ୟାମକୁ ବହୁ ପୁରସ୍କାର ଦେଲେ ।

ଜମିଦାର ଚାରିଆଡ଼େ ଶ୍ୟାମର ପ୍ରଶଂସା ଗାଇ ବୁଲିବାରୁ ଶ୍ୟାମ ପ୍ରତି ଲୋକେ ବହୁତ ଶ୍ରଦ୍ଧାଶୀଳ ହେଲେ । ଶ୍ୟାମସିଂହ ହାରଲବ୍ଧ ବିଦ୍ୟାବଳରେ



ଅନେକ ଲୋକଙ୍କର ଅନେକ ପ୍ରକାର ଉପକାର କଲା । କ୍ରମେ ସାଧାରଣରେ ପ୍ରଚାର ହୋଇଗଲା ଯେ ଭୀମସିଂହ ଅନ୍ୟର ମନକଥା ଜାଣିଦେଇ-ପାରେ । ଅବଶ୍ୟ କପରି ଉପାୟରେ ସେ ଜାଣେ, ସେ କଥା କାହାକୁ ହେଲେ ମାଲୁମ୍ ନ ଥିଲା ।

ଭୀମସିଂହ ଦିନେ ଜାଣିପାରିଲା ଯେ ଗାଁର ଝିଅଟିଏ ତାକୁ ବହୁତ ଭଲ ପାଏ । ସେ ଝିଅର ବାପାକୁ ପ୍ରସ୍ତାବ ଦେଇ ଝିଅଟିକୁ ବିବାହ କଲା ।

ଥରେ ଦଳେ ଭଦ୍ରବେଶୀ ଲୋକଙ୍କ ସହ କଥାବାର୍ତ୍ତା କଲାବେଳେ ଭୀମସିଂହ ବୁଝିପାରିଲା ଯେ ସେମାନେ ଭଦ୍ରତାର ମୁଖାପିନ୍ଧା ଗୋଟାଏ ଡାକୁଦଳ । ସେ ରାଜଦରବାରକୁ ଏ ସମ୍ବାଦ ପଠାଇଦେଲା । ଫଳରେ ଡାକୁଦଳ ଧରାପଡ଼ି-ଗଲେ ।

ଅନ୍ୟାନ୍ୟ ଅନେକ ଦୁର୍ବୃତ୍ତ ମଧ୍ୟ ଭୀମସିଂହ ଯୋଗୁ ଧରାପଡ଼ିଲେ । ଭୀମସିଂହର ଖ୍ୟାତି ଯେତିକି ବଢ଼ିଲା, ସେହି ଅନୁସାରେ ବିପଦର ସମ୍ଭାବନା ମଧ୍ୟ ସେତିକି ବଢ଼ିଲା । ଡାକୁ ଓ ଦୁର୍ବୃତ୍ତମାନେ ତାକୁ ହତ୍ୟା କରିବାକୁ ବାରଂ-ବାର ଯୋଜନା କଲେ । କିନ୍ତୁ ଭୀମସିଂହ ସେସବୁ ଆଗରୁ ଜାଣିପକାଇବାରୁ ସେମାନଙ୍କ ଯୋଜନା ସଫଳ ହୋଇପାରିଲା ନାହିଁ ।

କ୍ରମେ ରାଜ୍ୟର ବିଶିଷ୍ଟ ଲୋକେ ଭୀମସିଂହକୁ ନିମନ୍ତ୍ରଣ କରିନେଇ ଅମୁକ ତମୁକ ଲୋକର ମନକଥା ବିଷୟରେ ପଚାରିବାକୁ ଲାଗିଲେ । ହୁଏତ ଜଣେ ଆଉଜଣକ ସହ ବ୍ୟବସାୟ କରିବ—ସିଏ ଭୀମସିଂହକୁ ଡାକି ପଚାରେ ଅପରର ମନରେ କ'ଣ ଅଛି ।

ଭୀମସିଂହ ଅଡ଼ୁଆରେ ପଡ଼ିଲା । କାରଣ ସେ ଦେଖିଲା, ସବୁ ବିଶିଷ୍ଟ ଲୋକଙ୍କ ମନରେ ଆ-ବର୍ଜନା ଓ ଦୁରଭିସନ୍ଧି ଭର୍ତ୍ତି । କାହା ବିଷୟ ସେ କାହା ଆଗରେ ପ୍ରକାଶ କରିବ ? ଯାହା ହେଉ, ଲୋକେ ତା' ପରାମର୍ଶ ନେବା ସଙ୍ଗେ ସଙ୍ଗେ ସେ ବାବଦରେ ତାକୁ ପ୍ରଚୁର ଅର୍ଥ

ଦେଉଥାନ୍ତି । ସେ ବହୁତ ଅର୍ଥ ସଞ୍ଚୟ କଲା ।

ରାଜା ଦିନେ ତାକୁ ଡକାଇ ପଚାରିଲେ, “କହିଲ ବର୍ତ୍ତମାନ ମୁଁ ଭାବୁଛି କ'ଣ !”

ଶ୍ୟାମସିଂହ ଉତ୍ତର ଦେଲା, “ମହାରାଜ, ଆପଣ ଭାବୁଛନ୍ତି କି ମୁଁ କଦାପି ଆପଣଙ୍କ ମନକଥା କହିଦେଇପାରିବି ନାହିଁ ।”

ରାଜା ସାବାସ୍ ବୋଲି କହି ତାକୁ ସେହିକ୍ଷଣି ଦରବାରରେ ଜଣେ ଅମାତ୍ୟ ରୂପେ ନିଯୁକ୍ତ ଦେଲେ ।

ତେଣିକି ଶ୍ୟାମସିଂହର ଆୟ ଆହୁରି ବଢ଼ିଲା । ରାଜାଙ୍କ ପାରିଷଦ ମନ୍ତ୍ରୀ ସେନାପତି ସମସ୍ତେ ତା' ଜରିଆରେ ରାଜା ସେମାନଙ୍କ ସମ୍ପର୍କରେ କ'ଣ ଭାବୁଛନ୍ତି, ତାହା ଜାଣିବାକୁ ଚାହିଁଲେ ଓ ତାକୁ ଟଙ୍କାପଇସା ଦେଲେ ।

ଦିନେ ରାଜା ଶ୍ୟାମସିଂହକୁ ଏକାନ୍ତରେ ଡାକି ହସି ହସି ପଚାରିଲେ, “ବର୍ତ୍ତମାନ ମୁଁ ତୁମକୁ କାହିଁକି ଡକାଇଛି କହିଲ !”

“ମହାରାଜ, ମହାରାଣୀ ଆପଣଙ୍କ ପ୍ରତି କି ପ୍ରକାର ମନୋଭାବ ପୋଷଣ କରନ୍ତି, ଆପଣ ତାହା ଜାଣିବାକୁ ଆଗ୍ରହୀ ହୋଇଛନ୍ତି ।

“ସାବାସ୍ ! ତୁମେ ମହାରାଣୀଙ୍କ ପାଖକୁ ଏ ଚିଠିଖଣ୍ଡିକ ନେଇ ଯାଅ । ତାଙ୍କୁ ଏହି ଆକାରରେ ଭେଟି ତାଙ୍କ ମନ କଥା ଜାଣିଆସ ।” ରାଜା ନିର୍ଦ୍ଦେଶ ଦେଲେ ।



ଶ୍ୟାମସିଂହ ମହାରାଣୀଙ୍କୁ ନେଇ ଚିଠି ଦେଲା । ରାଣୀ କହିଲେ, “ଠିକ୍ ଅଛି ।” ଚିଠିରେ ରାଜା ଖାଲି ଏତିକି ଜଣାଇଥିଲେ—ସେଦିନ ସନ୍ଧ୍ୟାରେ ସଙ୍ଗୀତ ଆସର ହେବ ।

ଶ୍ୟାମସିଂହ ରାଣୀଙ୍କୁ ଦେଖିବା ମାତ୍ରେ ବୁଝିଲା, ରାଜାଙ୍କ ପ୍ରତି ରାଣୀଙ୍କର ତିଳେ ମଧ୍ୟ ସଦ୍‌ଭାବ ନାହିଁ । ସେ ରାଜାଙ୍କୁ ଘୃଣା କରନ୍ତି ଏବଂ ଅନ୍ୟ କେତେଜଣଙ୍କ ପ୍ରତି ଅନୁରକ୍ତି ପୋଷଣ କରନ୍ତି ।

କିନ୍ତୁ ସେ ଫେରିଆସି ରାଜାଙ୍କୁ କହିଲା, “ମହାରାଜ ! ମହାରାଣୀ ଆପଣଙ୍କ ପ୍ରତି ଅପାର ସଦିଚ୍ଛା ଓ ପ୍ରେମ ପୋଷଣ କରନ୍ତି ।”

ରାଜା ପୁଲକିତ ହୋଇ ସଙ୍ଗେ ସଙ୍ଗେ ନିଜର ବହୁମୂଲ୍ୟ ହାରଟିଏ ଭୀମସିଂହକୁ ଦେଇ ଦେଲେ ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ଭୀମସିଂହ ଘରକୁ ଫେରିଆସି ସେହି ରାତିରେ ହାରଟିକୁ ନିଆଁରେ ନିକ୍ଷେପ କଲା । ହାରଟିର ଗୁଣ ଏପରି, ତାହା ତରଳି ନ ଯାଇ ପୁରାପୂରି ଉଭାନ ହୋଇଗଲା ।

ଭୀମସିଂହ ଟଙ୍କା ପଇସା ଧରି ସସ୍ତ୍ରୀକ ସେହି ରାତିରେ ରାଜ୍ୟ ଛାଡ଼ି ଚାଲିଗଲା ।

ବେତାଳ କାହାଣୀଟି ଏହିଠାରେ ସମାପ୍ତ କରି ପଚାରିଲା, "ରାଜା ! ହାର ବଳରେ ଭୀମସିଂହ ଯେ କେବଳ ନିଜେ ଲାଭବାନ୍ ହେଉଥିଲା, ତାହା ନୁହେଁ, ରାଜ୍ୟର ମଧ୍ୟ ଉପକାର କରୁଥିଲା । ସେଭଳି ସ୍ଥଳେ ସେ ହଠାତ୍ ହାରଟି ବିସର୍ଜନ ଦେଲା କାହିଁକି ? ପାରିଲେ ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥାଇ ମଧ୍ୟ ଯଦି ନୀରବ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ରାଜା ବିକ୍ରମାର୍କ ତତ୍‌କ୍ଷଣାତ୍ ଉତ୍ତର ଦେଲେ : "ଭୀମସିଂହ ଭଲମଣିଷ ଥିଲା । ହାର ତାକୁ ଯେଉଁ ଶକ୍ତି ଦେଲା, ତାକୁ ସେ ଯଥା ସମ୍ଭବ ସଦୁପଯୋଗ କଲା । କିନ୍ତୁ ସେ ହାର ବ୍ୟବହାର କରି ଚିରଦିନ ଭଲ ହୋଇ ରହିବା ତା'ଭଳି ମଣିଷ ପକ୍ଷରେ ଯେ ସମ୍ଭବ ନୁହେଁ, ଏ କଥା ସେ ବୁଝିଲା ଯେତେବେଳେ ରାଣୀଙ୍କ ପ୍ରକୃତ ମନୋଭାବ ରାଜାଙ୍କୁ ଜଣାଇବା ଭଳି ସାହସ ସେ ପାଇଲା ନାହିଁ । ତାକୁ ମିଥ୍ୟା କହିବାକୁ ପଡ଼ିଲା । ଗୋଟିଏ ବିଶେଷ ଶକ୍ତିର ଉପଯୁକ୍ତ ବ୍ୟବହାର ସକାଶେ ଖାଲି ଭଲ ମଣିଷ ହେଲେ ଚଳିବ ନାହିଁ, ସେ ପାଇଁ ବିଶେଷ ମାନସିକ ବଳ ଥିବା ଦରକାର । ତାହା ସମସ୍ତଙ୍କ ପାଖରେ ନ ଥାଏ । ଭୀମସିଂହ ପାଖରେ ସେ ବଳ ଯେତିକି ଥିଲା, ସେତିକିରେ ଯେତେଦିନ ସମ୍ଭବ ସେ ରାଜ୍ୟର ଉପକାର କଲା । ଯେତେବେଳେ ତା' ବଳ ଯଥେଷ୍ଟ ନୁହେଁ ବୁଝିଲା, ଭଲ ମଣିଷ ହୋଇଥିବାରୁ ସେ ହାରକୁ ବିସର୍ଜନ ଦେଲା ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲିପଡ଼ିଲା ।

(କଳ୍ପିତ)





# ମନ୍ଦବୁଦ୍ଧି

ମୀନାକ୍ଷୀ ତା'ର ଦୁଇଭାଇଙ୍କର ଗୋଟିଏ ବୋଲି ଭଉଣୀ । ଖୁବ୍ ଗେହ୍ଲା ହୋଇ-ଥାଏ । ବଡ଼ ହୋଇଯିବାରୁ ଭାଇମାନେ ତା' ପାଇଁ ରାମପୁରର ସୋମେଶ୍ୱରଙ୍କୁ ବାଛିଲେ । ରୂପଗୁଣ ସବୁଥିରେ ଭଲ । ମୀନାକ୍ଷୀର ବିବାହ ହେଲା । ପରବର୍ଷ ଭାଇମାନେ ମଧ୍ୟ ବିବାହ କଲେ ।

ସୋମେଶ୍ୱରର ବ୍ୟବସାୟ ଥାଏ । ଜମି-ବାଡ଼ି ମଧ୍ୟ ବେଶ୍ ଥାଏ । ତେଣୁ ବହୁତ ଭଲରେ ଚଳନ୍ତି । ମୀନାକ୍ଷୀ ମଧ୍ୟ ଖୁବ୍ ସନ୍ତୁଷ୍ଟ ଥାଏ । ହେଲେ ପରିବାରରେ ବଡ଼ମା' ଓ ଶାଶୁଙ୍କର ଅଧିକାର ତାକୁ ଭଲ ଲାଗେ ନାହିଁ । ସେ ଚାହେଁ ନିଜର ଅଧିକାର ସାବ୍ୟସ୍ତ କରିବାକୁ, ଯଦିଓ ଜେଠିମା ତାକୁ ଖୁବ୍ ଭଲ ପାଉଥିଲେ ।

ମୀନାକ୍ଷୀ କେତେ ଥର ବୁଲେଇ ବଙ୍କେଇ ନିଜର ଇଚ୍ଛା ପ୍ରକାଶ କଲା, ହେଲେ ସୋମେଶ୍ୱର ନ ବୁଝିବାର ଛଳନା କଲା । ଶେଷକୁ ବାଧ ହୋଇ ମୀନାକ୍ଷୀ ଦିନେ କହିଲା, "ଦେଖ ତ, ଆମର ଅଲଗା ଘର କରି ରହିଲେ ଭଲ ହୁଅନ୍ତାନି ?" ଏକଥା ଶୁଣି ସୋମେଶ୍ୱର ଟିକେ ଆଶ୍ଚର୍ଯ୍ୟ ହୋଇ କହିଲା, "ଆଚ୍ଛା, ମୋତେ ଭାବିବାକୁ ଦିଅ ।"

ଇତିମଧ୍ୟରେ ଥରେ ବ୍ୟବସାୟ କାମରେ ସୋମେଶ୍ୱରଙ୍କୁ ସୋନପୁର ଯିବାକୁ ପଡ଼ିଲା । ସେଠାରୁ ଫେରିବା ପରେ ଖାଇବାକୁ ଦେଉ-ଦେଉ ମୀନାକ୍ଷୀ କହିଲା, "ଆଚ୍ଛା, ସୋନପୁର ବାଟରେ ତ ଆମ ଘର ପଡ଼େ । ମୋ ଭାଇମାନେ କେମିତି ଅଛନ୍ତି ?"

ସୋମେଶ୍ୱର ସେଥର ଶ୍ୱଶୁରଘର ଯାଇ ନ ଥିଲା । ପରଥର ସେ ସୋନପୁରରୁ ଫେରିବାରୁ ପୁଣି ମୀନାକ୍ଷୀ ଭାଇମାନଙ୍କ ସମ୍ପର୍କରେ ଖବର ପଚାରିଲା । ସୋମେଶ୍ୱର କହିଲା, ତୁମ ଭାଇ-ମାନେ ଭଲ ଅଛନ୍ତି, ହେଲେ ତୁମ ଭାଉଜମାନେ ଏତେ ଭଲ ନୁହନ୍ତି ।"

ଶକୁନ୍ତଳା

"କାହିଁକି ? କ'ଣ ହେଲା ?" ମୀନାକ୍ଷୀ ପଚାରିଲା ।

କଥା କ'ଣ କି ତୁମ ଭାଇମାନଙ୍କୁ ଭିନେ ହେବା ପାଇଁ ଗୁରୁଜନମାନେ ଶିଖାଉଛନ୍ତି ଓ ଖୁବ୍ ଚାପ ଦେଉଛନ୍ତି । ଦୁଇପକ୍ଷ ମୋର ମତ ପୁଚ୍ଛିଲେ ।" ସୋମେଶ୍ୱର କହିଲା ।

"ତୁମେ କ'ଣ ମତ ଦେଲ ?" ମୀନାକ୍ଷୀ ପଚାରିଲା ।

ସୋମେଶ୍ୱର କହିଲା, "କ'ଣ ଆଉ କହିବ ? ସଫା କଥା । ଯଦି ଦୁଇଭାଇଙ୍କ ମନ ମିଳୁ ନାହିଁ ତେବେ ଶୀଘ୍ର ଭିନେ ହୋଇଯିବା ଭଲ ।"

"ବାଃ, ଇଏ କି ମତ ? ତୁମେ ଯେଉଁ ମତ ଦେଲ ତାହା ନିହାତି ସାଧାରଣ । ବରଂ ମନ୍ଦ-ବୁଦ୍ଧି ।" ମୀନାକ୍ଷୀ କହିଲା । କାହିଁକି ନା ଭାଇ-ମାନଙ୍କର ଭିନେ ହେବା କଥା ତାକୁ ଆଦୌ ଭଲ ଲାଗିଲା ନାହିଁ ।

କିଛି ଦିନ ପରେ ପୁଣି ମୀନାକ୍ଷୀ ନିଜ ଘର ବିଷୟରେ ସୋମେଶ୍ୱରକୁ ପଚାରିଲା, "ତୁମେ କ'ଣ ଠିକ୍ କଲ ?"

"କ'ଣ ଠିକ୍ କଲି ପଚାରୁଛ ? ତୁମ କଥା ଅନୁସାରେ ମୁଁ କାମ କରି ପାରିବ ନାହିଁ ।" ସୋମେଶ୍ୱର କହିଲା ।

"କାହିଁକି ?" ମୀନାକ୍ଷୀ ଚମ୍କିଲା ।

"କାରଣ ତୁମେ ମୋତେ ଯେଉଁ କଥା କହିଲ ସେଇଟା ତ ଏକବାରେ ମନ୍ଦବୁଦ୍ଧି ପ୍ରସୂତ କଥା । ସେଥିପାଇଁ ।" ସୋମେଶ୍ୱର କହିଲା, "କ'ଣ ମୋ କଥା ତୁମ ପାଇଁ ଏତେ ନିର୍ବୁଦ୍ଧିଆ କଥା ହେଲା ?" ଅଭିମାନରେ ଆଖି ଛଳ ଛଳ କରି ମୀନାକ୍ଷୀ ପଚାରିଲା ।

"କିମିତି ନୁହେଁ ? ଭାଇମାନଙ୍କ କ୍ଷେତ୍ରରେ ମୋ ମତ ଯଦି ବୁଦ୍ଧିହୀନତାର କଥା ହେଲା ତେବେ ତୁମେ ତ ସେଇ କଥା ମୋତେ କହୁଛ ! ତୁମର କପର ନ ହେଲା ?" ସୋମେଶ୍ୱର ପଚାରିଲା

ମୀନାକ୍ଷୀକୁ ଲାଗିଲା ତା'ର ମୁହଁ ଉପରେ ଯେପରି କିଏ ଥାପଡ଼ ମାରିଛି । ସେ ଆଉ କେବେ ହେଲେ ଏସବୁ ନେଇ ଚିନ୍ତା କରିନ ବା ସୋମେଶ୍ୱରକୁ କହିନାହିଁ ।





# ପରିବର୍ତ୍ତନ

କବାଟ ଖଡ଼୍‌ଖଡ଼୍ ହେବାରୁ ରମା ଆସି ଖୋଲିଲା । ସେତେବେଳେ ବାହାରେ ଅନ୍ଧକାର । ଜଣେ ବ୍ୟକ୍ତି ବାହାରୁ ହଠାତ୍ ଭିତରକୁ ପଶିଆସି କବାଟ ବନ୍ଦ କରି ଦେଲା ଓ ରମାକୁ କହିଲା, "ବର୍ତ୍ତମାନ ପାଟି କରିବୁ ତ ଗଳା ଚିପିଦେବି । ମୁଁ ସବୁକିଛି କରିପାରେ, ମୁଁ ଜେଲ୍‌ରୁ ପଳାଇଆସିଛି ।"

ସେହି ରାସ୍ତାରେ ଚାରି ଜଣ ବ୍ୟକ୍ତିଙ୍କର ଦୌଡ଼ିବାର ଶବ୍ଦ ଶୁଣାଯାଉଥିଲା । ସେମାନେ ଶେରକୁ ଖୋଜୁଥିବା ପୋଲିସ୍ । ସିପାହିମାନେ ଦୂରକୁ ଚାଲିଯିବା ପରେ ରମା ପଚାରିଲା, "ତୁମେ ଆସିଲ କେଉଁ ଉଦ୍ଦେଶ୍ୟରେ ?"

ଶେର ରାଗିଯାଇ କହିଲା, "ସେଥିରେ ତୁମର କ'ଣ ଅଛି ? ଆଚ୍ଛା କୁହ ତ ତୁମ ଛଡ଼ା ଏ ଘରେ ଆଉ କେହି ଅଛି କି ?"

"ତୁମର ଭୟର କୌଣସି କାରଣ ନାହିଁ । ମୁଁ ଏକଲା ଅଛି । ଅଧା ରୋଷେଇ ହୋଇ-ଯାଇଛି । ସେଠାକୁ ଯିବ ?" କହୁ କହୁ ରମା ରନ୍ଧାଘର ଆଡ଼କୁ ଚାଲିଲା ।

ଶେର ରମା ପଛେ ପଛେ ଯାଇ ରନ୍ଧାଘର ଭିତରେ ପିଢ଼ାଟିଏ ପକାଇ ବସିଲା । ରମା ବାଇଗଣ କାଟି ବସିଲା ଓ ଆଖିରୁ ଲୁହ ପୋଛିଲା ।

"ଆଚ୍ଛା ତୁମେ କାନ୍ଦୁଛ କାହିଁକି ? ମୁଁ ତ ତୁମକୁ କିଛି କହିନାହିଁ ।" ଶେର ପଚାରିଲା ।

ରମା କହିଲା, "ତୁମକୁ ଦେଖିବା ବେଳଠୁ ମୋର ମୋ ଭାଇ କଥାହିଁ ମନେ ପଡ଼ୁଛି । ସେ ଥରେ ରାଗିଯାଇ ଜଣକୁ ପିଟିଲା ଓ ଜେଲ୍ ଗଲା । କିନ୍ତୁ ଦିନେ ହଠାତ୍ ସେ ତୁମ ପରି ଜେଲ୍‌ରୁ ଖସି ପଳାଇଆସିଲା । କିନ୍ତୁ ସେଇ ଦିନଠୁ ସେ

ରାମନାଥ



ଆଉ ଶାନ୍ତିରେ ରହି ପାରିଲା ନାହିଁ । ତାକୁ ନା ନିଦ ଆସେ ନା ଭଲରେ ଖାଇପାରେ । ଘରୁ ବାହାରକୁ ଆସିବାକୁ ଡରମାଡ଼େ । ବାହାରେ କିଛି ଶବ୍ଦ ହେବା ମାତ୍ରେ ପୋଲିସ୍ ଆସୁଛି ଭାବି ଲୁଚେ । ଏପରି ଭାବରେ ସେ ଏକବାରେ ପାଗଳ ପରି ହୋଇଗଲା । କିନ୍ତୁ ଯଦି ସେ ପୂରା ସମୟ ଜେଲ୍‌ରେ କଟାଇ ଆସିଥା'ନ୍ତା, ତେବେ ଏତେ କଷ୍ଟ ଭୋଗି ନ ଥା'ନ୍ତା । ଆହୁରି ମଧ୍ୟ ନୂଆ କରି ଜୀବନ ଆରମ୍ଭ କରିଥା'ନ୍ତା ।

"ମୁଁ ଏକଥା ତାକୁ କହିଥିଲି ହେଲେ ସେ ଶୁଣିଲା ନାହିଁ । ଦଶଦିନ ଏପରି ହନ୍ତସନ୍ତରେ ରହିବା ପରେ ଥରେ ରାତିରେ ପୋଲିସ୍‌ମାନେ ହଠାତ୍ ଆସି ପହଞ୍ଚିଲେ । ଉପରୁ ପଳାଇ ଯାଉଯାଉ ଛାତରୁ ଡେଇଁପଡ଼ି ପ୍ରାଣ ହରାଇଲା ।"

ଶେଖର କହିଲା, "ଆସ୍ତେ ଆସ୍ତେ କଥା କୁହ, କିଏ ଆସିଯାଇପାରେ ।"

"ରୋଷେଇ ତ ହୋଇଗଲା । କ'ଣ, ଖାଇବାକୁ ଦେବି ?" ରମା ପଚାରିଲା ।

ଶେଖରର ଖାଇବାକୁ ଇଚ୍ଛା ଥିଲେ ମଧ୍ୟ ମନରେ ଟିକେ ସନ୍ଦେହ ଥିଲା ।

ରମା ବୁଝିପାରି କହିଲା, "ଏ ଖାଦ୍ୟରେ ବିଷ ନାହିଁ । ତୁମ ଆଗରେ ତ ତିଆରି କଲି ।" ତା'ପରେ ରମା ଶେଖର ପାଖରେ ଖାଦ୍ୟ ପରଷି-ଦେଲା ।

ଶେଖର ଖାଉଥାଏ । ରମା ପଚାରିଲା, "ତୁମକୁ ଦେଖିଲେ ଭଦ୍ରଘରର ବ୍ୟକ୍ତି ପରି ଲାଗୁଛି । ତେବେ ଜେଲ୍ କିପରି ଗଲ ?"

ଶେଖର କହିଲା, "ମୋର ବାପା ମା' ନ ଥିଲେ । ମୋ ଆଈ ମୋତେ ପାଳୁଥାଏ । ଆଈ ମରିଯିବା ପରେ ମୋର ଚଳିବାକୁ ବହୁତ ଅସୁବିଧା ହେଲା । ଗ୍ରାମରେ ମଧ୍ୟ କୌଣସି କାମ ଜୁଟିଲା ନାହିଁ । ତେଣୁ ବାଧ୍ୟ ହୋଇ ସହରକୁ ଚାଲିଆସିଲି । ସହରରେ ମଧ୍ୟ କୌଣସି କାମ ଜୁଟିଲା ନାହିଁ । ଚାରିଦିନ ଭୋକରେ ରହିଥାଏ । ଶେଷକୁ ଭୋକ ସହ୍ୟ କରି ନ ପାରି ଜଣେ ଧନୀଲୋକଙ୍କ ହାତରୁ ଟଙ୍କାଥଳି ଟାଣିନେଇ



ଦୌଡ଼ିଲି, କିନ୍ତୁ ଧରାପଡ଼ିଲି ଓ ଦୁଇମାସ ଜେଲ୍-ଦଣ୍ଡ ଭୋଗିଲି ।"

"ତେବେ ତୁମେ ଜେଲ୍‌ରୁ ପଳାଇ ଆସିଲ କାହିଁକି ?" ରମା ପଚାରିଲା ।

"ଜେଲ୍‌ରେ ସବୁପ୍ରକାର କାମ କରିବାକୁ ପଡ଼ୁଥାଏ । ଲୁଗା ଧୋଇବା, ଚଟେଇ ବୁଣିବା, ଲୁଗା ବୁଣିବା, ସିଲେଇ କାମ ଇତ୍ୟାଦି । ମୋତେ ଏତେ ପ୍ରକାର କାମ କରିବାକୁ ଭଲ ଲାଗିଲା ନାହିଁ ।" ଶେଖର କହିଲା ।

ରମା ହସି ହସି ପଚାରିଲା, "ତୁମକୁ ଜେଲ୍ ବାହାରେ କାମ ମିଳୁ ନ ଥିଲା ବୋଲି ଜେଲ୍ ଗଲ । ପୁଣି ସେଠି ବହୁତ କାମ ବୋଲି ପଳାଇ ଆସିଲ । କୁହ, ଏବେ କ'ଣ କରିବ ?"

ଶେଖର କିଛି ଉତ୍ତର ଦେଇପାରିଲା ନାହିଁ । ମୁଣ୍ଡପୋତି ବସିଲା । ରମା ପୁଣି କହିଲା, "ବର୍ତ୍ତମାନଠାରୁ ତୁମର ନରକ ଯନ୍ତ୍ରଣା ଆରମ୍ଭ ହେବ । ତୁମେ ଭଲରେ ଖାଇପାରିବ ନାହିଁ, ଶୋଇ ପାରିବ ନାହିଁ । ସର୍ବଦା ଧରାପଡ଼ିବା ଭୟ ତୁମ ପଛରେ ଗୋଡ଼ାଇବ । ପ୍ରଶ୍ନ ହେଉଛି ତୁମେ ବଞ୍ଚିବ କିପରି ? ତୁମକୁ କାମ ଦେବ ବା କିଏ ? ତୁମେ ଜେଲ୍‌ରୁ ଆସିବା ଦ୍ୱାରା ତୁମର ଦଣ୍ଡ ଅଧିକ ବଢ଼ିଗଲା । ଏପରି ନ ହୋଇ ଜେଲ୍‌ରେ ଥିଲେ, ଯେତେ କାମ କରୁଥିଲ ସେଗୁଡ଼ିକ ଭଲ ଭାବରେ ଶିଖିପାରିଥା'ନ୍ତ । ଯଦ୍ୱାରା ଜେଲ୍‌ରୁ ଖଲାସ ହେବା ପରେ ପରେ ସେଥିରୁ କିଛି କାମ ଦ୍ୱାରା ତୁମେ ଜୀବିକା ନିର୍ବାହ କରିପାରିଥା'ନ୍ତ । କାରଣ ଜେଲ୍‌ରେ ଦଣ୍ଡ ଭୋଗିବା ସହିତ କିଛି କାମର ଶିକ୍ଷା ମଧ୍ୟ ଦିଆଯାଉଛି ।"

ସବୁକଥା ଶେଖର ବୁଝିଗଲା । ଶାନ୍ତ ଭାବରେ ପଚାରିଲା, "ଭୁଲ ତ ହୋଇଗଲା । ହେଲେ ବର୍ତ୍ତମାନ ଏ ଭୁଲର ସଂଶୋଧନ କିପରି ହେବ ?"

"ବର୍ତ୍ତମାନ ମଧ୍ୟ ସଂଶୋଧନ କରିବା ପାଇଁ କିଛି ଡେରି ହୋଇଯାଇନାହିଁ । ତୁମେ ନିଜେ ଜେଲ୍‌ଖାନା ଯାଇ ଆତ୍ମସମର୍ପଣ କର । ଅବଶ୍ୟ ଦଣ୍ଡସମୟ କିଛିଟା ବଢ଼ିଯିବ । କିନ୍ତୁ କୌଣସି

କାମ ଭଲ ଭାବରେ ଶିଖିବା ପାଇଁ ସେ ସମୟ ତୁମକୁ ସାହାଯ୍ୟ କରିବ ।” ରମା ବୁଝାଇଲା ।

ଚୋର ଖୁସି ହୋଇ କହିଲା, “ତୁମେ ନିଜ ଭଉଣୀ ପରି ଭଲ କଥା କହୁଛ । ମୁଁ ତୁମ ଋଣ ଜୀବନରେ ଶୁଝିପାରିବି ନାହିଁ । ଆଚ୍ଛା, ମୁଁ ଚାଲିଲି ।” ଚୋର ଚାଲିଗଲା । ଚୋର ଚାଲିଯିବା ପରେ ପୁଣି କବାଟ ଖଡ୍‌ଖଡ୍ ହେଲା । ଏଥର କିନ୍ତୁ ଆସିଲେ ରମାର ବାପା ।

ରମା ଆଶ୍ଚର୍ଯ୍ୟ ହୋଇ ପଚାରିଲା, “ଆଜି ଏତେ ଡେରି କାହିଁକି ? କେବେ ତ ଏତେ ଡେରି ହୁଏ ନାହିଁ ?”

“ଜେଲ୍‌ରୁ ଗୋଟାଏ ଚୋର ଖସିପଳାଇଛି । ସେଥିପାଇଁ ଏତେ ଡେରି ହେଲା ।” ରମାର ବାପା କହିଲେ ।

ରମାର ବାପା ଜେଲ୍ ଅଫିସର୍ ଥିଲେ । ରମା ତା’ ବାପାଙ୍କୁ କହିଲା, “ଆପଣମାନେ କଇଦୀମାନଙ୍କ ସହିତ ଯେଉଁ ବ୍ୟବହାର କରନ୍ତି ତାହା ବଡ଼ ଅଜବ । କାରଣ ଜେଲ୍‌ଖାନା ସେମାନଙ୍କୁ କେବଳ ଦଣ୍ଡ ଦେବାପାଇଁ ହୋଇ-ନାହିଁ । ସେମାନଙ୍କ ମନ ଭିତରେ ପରିବର୍ତ୍ତନ ଆଣିବା ପାଇଁ ହୋଇଛି । ଯେଉଁ ଚୋର କଥା କହୁଛ, ସେ ସିଧା ଆମ ଘରେ ଆସି ପହଞ୍ଚିଥିଲା । ମୁଁ ତା’ର ମନ ପରିବର୍ତ୍ତନ କରି ପଠାଇଦେଇଛି । ସେଥିପାଇଁ ମୁଁ କଳ୍ପନାରେ ଗୋଟିଏ ଚୋରର ଗଳ୍ପ ତାକୁ କହିଛି ।” ତା’ ପରେ ସମସ୍ତ ଘଟଣା ରମା ବୁଝାଇ କହିଲା ।

“ବାଃ ତୁ ପ୍ରକୃତରେ ଜଣେ ଜେଲ୍ ଅଫିସର୍ ଝିଅ ଭାବରେ କାମ କରିଛୁ । ମୁଁ ଦେଖିଆସେ ସେ ଫେରିଯାଉଛି ନା ନାହିଁ ।”

“ବାପା, ମୁଁ କହିଲି ନା ? ଆପଣ ସେ ଚୋର ପାଇଁ କୌଣସି ଚିନ୍ତା କରନ୍ତୁ ନାହିଁ । ତା’ ଭିତରେ ଥିବା ଚୋର ଚାଲିଯାଇଛି । ଆପଣ ଖାଇପିଇ ସୁସ୍ଥିରେ ଯାଇ ଦେଖିବେ ।” ରମା କହିଲା ।





# ପରଶୁରାମ

ପରଶୁରାମ କାର୍ତ୍ତବୀର୍ଯ୍ୟ ଆଦି କ୍ଷତ୍ରିୟମାନଙ୍କୁ ମାରି ନର୍ମଦାରେ ସ୍ନାନ କରି ଯାଇ ପହଞ୍ଚିଲେ କୈଳାସରେ । ସେଠାରେ ଶିବଙ୍କୁ ଦେଖା କରିବାକୁ ଯିବା ବେଳେ ଗଣେଶ ତାଙ୍କର ପଥ ରୋଧ କରି ଭିତରକୁ ଛାଡ଼ିଲେ ନାହିଁ । ଦୁହିଁଙ୍କ ମଧ୍ୟରେ ଘୋର ବଚସା ହେଲା; କ୍ରମେ ତାହା ମୁଷ୍ଟିଯୁଦ୍ଧରେ ପରିଣତ ହେଲା । ଗଣେଶ ତାଙ୍କୁ ଶୁଣ୍ଢରେ ବହୁତ ଉପରକୁ ଉଠାଇଲେ । ତେଣୁ ପରଶୁରାମ ରାଗରେ ତାଙ୍କ ପରଶୁ ଆଘାତରେ ଗଣେଶଙ୍କର ଦାନ୍ତଟିଏ ଭାଙ୍ଗିଦେଲେ ।

ଏ ଗୋଳମାଳ ଶୁଣି ଶିବ ଓ ପାର୍ବତୀ ବାହାରକୁ ଆସିଲେ ଓ ଗଣେଶଙ୍କ ଅକ୍ଷମ ଦଶା ଦେଖିଲେ । ପାର୍ବତୀ ରାଗିଯାଇ କହିଲେ, "ଦେଖ, ଏ ପରଶୁରାମ ଆମଠୁ ଏତେ ଉପକାର ପାଇବା ପରେ କୃତଜ୍ଞତା ତ ନାହିଁ, ଉପର ଆମର ପୁଅକୁ ଆସି ମାରୁଛି ।"

ଶିବ କିଛି କହିଲେ ନାହିଁ । ଶ୍ରୀକୃଷ୍ଣ ଆସି ପାର୍ବତୀଙ୍କୁ କହିଲେ, "କ'ଣ ପରଶୁରାମ ଆପଣଙ୍କ ପୁଅ ନୁହେଁ ? ଆପଣ ତାଙ୍କୁ କ୍ଷମା ଦିଅନ୍ତୁ ।"

ପରଶୁରାମ ପାର୍ବତୀଙ୍କଠାରୁ କ୍ଷମା ମାଗି-ନେଲେ । ତା'ପରେ ସେ ଘରକୁ ଲେଉଟି-ଆସିଲେ । ତାଙ୍କର କ୍ଷତ୍ରିୟସଂହାର ବୃତ୍ତାନ୍ତ ପିତା ଯମଦଗ୍ନିଙ୍କୁ ଶୁଣାଇଲେ । ଯମଦଗ୍ନି ସବୁ ଶୁଣି କହିଲେ ସବୁ ପାପର ପ୍ରାୟଶ୍ଚିତ୍ତ ପାଇଁ ମହେନ୍ଦ୍ର ପର୍ବତକୁ କିଛିଦିନ ଯାଇ ତପସ୍ୟା କଲେ ଭଲ । ସେ ତାହାହିଁ କଲେ ।

ମହେନ୍ଦ୍ର ପର୍ବତରେ ତପସ୍ୟାରତ ଥିବା ବେଳେ ସେ ଶୁଣିବାକୁ ପାଇଲେ କାର୍ତ୍ତବୀର୍ଯ୍ୟର ଜଣେ ପୁଅ ଆସି ଯମଦଗ୍ନିଙ୍କୁ ମାରିଦେଇଛନ୍ତି; ତାଙ୍କ ମୃତ୍ୟୁ ପରେ ମାତା ରେଣୁକା ମଧ୍ୟ

ସ୍ୱାମୀଙ୍କର ସହଗମନ କରିଛନ୍ତି ।

ଏ କଥା ଶୁଣି ତାଙ୍କ ମନ ଭିତରେ ଖୁବ୍ କ୍ରୋଧ ଆସିଲା । ସେ ମନସ୍ଥ କଲେ କି ସଂସାରର ସବୁ ରାଜାଙ୍କୁ ମାରି ସେହି ରକ୍ତରେ ପିତୃତର୍ପଣ କରିବେ । ତା'ପରେ ନିଜ ଶପଥ ଅନୁସାରେ କାର୍ତ୍ତବୀର୍ଯ୍ୟଙ୍କର ସବୁ ପୁତ୍ରଙ୍କୁ ମାରିଲେ । ସେ ଯେକୌଣସି ରାଜାଙ୍କୁ ଦେଖନ୍ତି ମାରନ୍ତି । ତାଙ୍କ ରାଜ୍ୟ ମଧ୍ୟ ଜଳାଇ ଧ୍ୱଂସ କରନ୍ତି ।

ଏହିପରି ଭାବରେ ସେ ସମସ୍ତ ହୈହେୟ ବଂଶକୁ ନିପାତ କରି ସନ୍ତୁଷ୍ଟ ହୋଇ ତପସ୍ୟା କରିବାକୁ ଗଲେ । ସେଠାରେ ଥିବା ସମୟରେ ଥରେ ବିଶ୍ୱାମିତ୍ରଙ୍କ ନାତି ପରାବସୁ ଆସି ତାଙ୍କୁ ତାଚ୍ଛଲ୍ୟ କରି କହିଲେ, "ଆହେ ରାମ, ଆପଣ କ'ଣ କ୍ଷତ୍ରିୟମାନଙ୍କୁ ଡରି ଏଠାରେ ଲୁଚିଛନ୍ତି କି ?"

ତା'ପରେ ଯେତେ ବୃଦ୍ଧ ଓ ବାଳକ କ୍ଷତ୍ରିୟଙ୍କୁ ସେ ମାରି ନ ଥିଲେ, ସେମାନଙ୍କୁ ଖୋଜି ଖୋଜି ମାରିଲେ ।

ତଥାପି ମଧ୍ୟ ସବୁ କ୍ଷତ୍ରିୟ ରାମଙ୍କ ହାତରେ ମଲେ ନାହିଁ । କେହି କେହି ସ୍ତ୍ରୀମାନଙ୍କ ମଧ୍ୟରେ ଓ ପଶୁଦଳ ଭିତରେ ଲୁଚିଗଲେ । କେତେକ ମଧ୍ୟ ନିହାତି ଶିଶୁ ଥିଲେ । କ୍ରମେ ସେମାନେ ବଡ଼ ହେଲେ ବା ଲୁଚିଥିବା ଲୋକଙ୍କର ବଂଶ ବୃଦ୍ଧି ହେଲା । ତେବେ ତାଙ୍କ କ୍ରୋଧରୁ ନିସ୍ତାର ପାଇଥିବା କୌଣସି କ୍ଷତ୍ରିୟକୁ ଦେଖିଲେ ସେ ତତ୍କ୍ଷଣାତ୍ ମାରିପକାଉଥିଲେ । ଏହି ରୂପେ



ସେ ଏକୋଇଶ ବାର ପୃଥିବୀ ନିଃକ୍ଷତ୍ରିୟ କଲେ ।

ଯେତେ ଯେତେ ରାଜାଙ୍କୁ ସେ ମାରୁଥାନ୍ତି ସେମାନଙ୍କ ରକ୍ତ ନେଇ କୁରୁକ୍ଷେତ୍ରରେ ପାଞ୍ଚଟି କୁଣ୍ଡରେ ରଖି ପିତୃତର୍ପଣ କରୁଥାନ୍ତି । ସେଗୁଡ଼ିକୁ ଶ୍ୟମନ୍ତପଞ୍ଚକ କୁହାଯାଏ ।

ପିତୃତର୍ପଣ ସମୟରେ ତାଙ୍କୁ ପିତୃପୁରୁଷମାନେ ବୁଝାଇଲେ, "ତୁମ ପାପର ପ୍ରାୟଶ୍ଚିତ୍ତ ଏବେ ମଧ୍ୟ ହୋଇନାହିଁ । ତେଣୁ ତୁମେ ପୁନଶ୍ଚ ମହେନ୍ଦ୍ର ପର୍ବତକୁ ଯାଇ ସେଠାରେ ତପସ୍ୟା ଓ ଯଜ୍ଞ କର ।"

ତା'ପରେ ସେ ସେଠାରୁ ଫେରିଯାଇ ଅଶ୍ୱମେଧ ଯଜ୍ଞ କଲେ । ସେତେବେଳେ ଯେଉଁ ଋଷିମାନେ ସେଠାକୁ ଯଜ୍ଞ ଦେଖିବାକୁ ଆସିଥିଲେ ସେମାନେ ପରଶୁରାମଙ୍କୁ ଅନୁରୋଧ କଲେ ଯେ ଗୋକର୍ଣ୍ଣ ତୀର୍ଥ ସମୁଦ୍ରରେ ବୁଡ଼ିଯାଉଛି, ତାକୁ କୌଣସି ପ୍ରକାରେ ରକ୍ଷା କରିବାକୁ ହେବ । କିନ୍ତୁ ପରଶୁରାମ କହିଲେ, "ମୁଁ ବର୍ତ୍ତମାନ ଯଜ୍ଞରେ ଦୀକ୍ଷିତ ହୋଇଅଛି । କିପରି ଅସ୍ତ୍ର ଧାରଣ କରିବି ?"

ଶୁଷ୍ଟ ନାମକ ଜଣେ ଋଷି କହିଲେ, "ଆପଣ ଆୟୁଧ ଧାରଣ କରିବାରେ କୌଣସି ଦୋଷ ନାହିଁ ।"

ଋଷିମାନଙ୍କ କଥା ଅନୁସାରେ ପରଶୁରାମ ଗୋକର୍ଣ୍ଣ ତୀର୍ଥରେ ପହଞ୍ଚି ସମୁଦ୍ରକୁ ପଛକୁ ହଟିଯିବାକୁ ଆଦେଶ ଦେବା ପାଇଁ ବରୁଣଦେବଙ୍କୁ ଡାକଲେ । କୌଣସି ଉତ୍ତର ମିଳିଲା



ନାହିଁ । ବାରଂବାର ସେ ଡାକିଲେ, କିନ୍ତୁ କୌଣସି ଉତ୍ତର ନାହିଁ । ତେଣୁ ସେ ଆଗ୍ନେୟାସ୍ତ୍ର ମାରି ଚତୁର୍ଦ୍ଦିଗରେ ଅଗ୍ନି ଜାଳିଲେ । ସମୁଦ୍ର ଡରିଯାଇ ପରଶୁରାମଙ୍କର ଶରଣ ନେଇ କହିଲା, "କୁହନ୍ତୁ, କେତେଦୂର ଘୁଞ୍ଚିଯିବାକୁ ହେବ ।"

ପରଶୁରାମ ଏ କଥା ଶୁଣି ତାଙ୍କ ପରଶୁକୁ ଦୂରକୁ ଫିଙ୍ଗିଦେଲେ । ତାହା ଦୁଇଯୋଜନ ଦୂରରେ ପଡ଼ିଲା । ସମୁଦ୍ର ସେତିକି ଦୂର ପଛକୁ ହଟିଗଲା ।

(ଏଠାରେ କହିବା ଅପ୍ରାସଙ୍ଗିକ ହେବ ନାହିଁ ଯେ ସମୁଦ୍ର ଭିତରୁ ବାହାରିବା ଏହି ଭୂଖଣ୍ଡ ଅତୀତରେ ଚେର ନାମରେ ଓ ଆଜି କେରଳ ନାମରେ ଖ୍ୟାତ ।)

ଥରେ କର୍ଣ୍ଣ ବ୍ରାହ୍ମଣ ବେଶରେ ଆସି ପରଶୁରାମଙ୍କଠାରୁ ଅସ୍ତ୍ରଶିକ୍ଷା କରୁଥିଲେ । ଦିନେ କର୍ଣ୍ଣଙ୍କ ଜଙ୍ଘ ଉପରେ ମଥା ରଖି ପରଶୁରାମ ଶୋଇଥିବା ବେଳେ ଗୋଟିଏ ପୋକ ଆସି କାମୁଡ଼ି ତମ ଫୁଟାଇ ରକ୍ତ ବୁହାଇଦେଲା । ଗୁରୁଙ୍କ ନିଦ ଭାଙ୍ଗିବା ଭୟରେ ସେ ସବୁ ସହ୍ୟ କଲେ । କିଛି ସମୟ ପରେ ରକ୍ତ ବୋହି ଗୁରୁଙ୍କ ଦେହରେ ଲାଗିବାରୁ ତାଙ୍କର ନିଦ୍ରାଭଙ୍ଗ ହେଲା ।

"ଏପରି ରକ୍ତ ବୋହିଯାଉଥିବା ବେଳେ ଧୈର୍ଯ୍ୟ ଧରି ରହିବା କେବଳ କ୍ଷତ୍ରିୟ ପାରିବ । ତୁମେ ମିଥ୍ୟା କଥା କହି ମୋଠାରୁ ଅସ୍ତ୍ରଶିକ୍ଷା କରିଛ । ସମୟ ବେଳେ ଏହି ଅସ୍ତ୍ରପ୍ରୟୋଗ ବିଧି ତୁମେ ଭୁଲିଯିବ ।" କ୍ରୋଧରେ ସେ କର୍ଣ୍ଣଙ୍କୁ ଏପରି ଅଭିଶାପ ଦେଲେ । କର୍ଣ୍ଣ ନତମସ୍ତକ ହୋଇ ପରଶୁରାମଙ୍କ କ୍ରୋଧ ସହ୍ୟ କଲେ ।

ତା'ପରେ ସେ କ୍ଷତ୍ରିୟମାନଙ୍କୁ ମାରି ଯେଉଁ ରାଜ୍ୟସବୁ ପାଇଥିଲେ ସେସବୁ କଶ୍ୟପ ଋଷିଙ୍କୁ ଦାନ ଦେଇଦେଲେ । ଦାନ ଦେବା ପରେ ସେ ଦକ୍ଷିଣସମୁଦ୍ର ପାର ହୋଇ ବହୁ ଦୂରକୁ ଚାଲିଯାଇ ତପସ୍ୟା କଲେ । (ସମାପ୍ତ)





ଭାରତ-କାହାଣୀ

## ଇତିହାସର ଉଷାଲୋକ

ଭାରତର ସଭ୍ୟତା କେତେ ପ୍ରାଚୀନ ? ଏହି ଭୂଖଣ୍ଡର ଆଦିମ ଅଧିବାସୀ କିଏ ଥିଲେ ? ଏସବୁ ପ୍ରଶ୍ନର ଉତ୍ତର ପାଇବା ସହଜ ନୁହେଁ । କିମ୍ବଦନ୍ତୀ କହେ, ବହୁ ସଭ୍ୟତା କାଳକ୍ରମେ ପ୍ରଳୟ-ପୟୋଧି ଜଳେ ଭୂପୃଷ୍ଠରୁ ଲୁପ୍ତ ହୋଇଛି ।

ସୁପ୍ରାଚୀନ ଭାରତର ମହାନ୍ ମୁନିଋଷିଙ୍କ ରଚିତ ବେଦରୁ ଆମେ ଏଇ ପ୍ରମାଣ ପାଉ ଯେ ଈଶ୍ୱରଙ୍କୁ ଜାଣିବା ପାଇଁ, ମୁକ୍ତି ଏବଂ ଅମରତ୍ୱ ଉପଲବ୍ଧି କରିବା ନିମନ୍ତେ ସେମାନଙ୍କର ଥିଲା ଅମାପ ଅଭୀପ୍ସା ।





ହରପ୍ପା ଏବଂ ମହେଞ୍ଜୋଦାରୋ ଭଳି ସ୍ଥାନମାନଙ୍କରେ ଏକଦା ବିକାଶ ଲାଭ କରିଥିଲା ଉନ୍ନତ ନଗର ଓ ବସତି । ପାଞ୍ଚ ହଜାର ବର୍ଷ ତଳର ସେହି ସଭ୍ୟତାର ଧ୍ୱଂସାବଶେଷରୁ ଜଣାଯାଏ, ସେ ସଭ୍ୟତା ତତ୍‌କାଳୀନ ପୃଥିବୀର ଅନ୍ୟ ଯେକୌଣସି ସଭ୍ୟତା ତୁଳନାରେ ଉନ୍ନତ ଥିଲା ।



ଏକଦା ଭାରତୀୟମାନେ ଦୁଃସାହସିକ ନାବିକ ଥିଲେ । ବଣିକ ଜରିଆରେ ସମୁଦ୍ରପାରର ବହୁ ଦେଶରେ ସେମାନେ ପହଞ୍ଚାଇ ଦେଇଥିଲେ ସେମାନଙ୍କ ନିଜ ସଂସ୍କୃତି । କେତେକଙ୍କ ମତରେ ପ୍ରାଚୀନ ସଭ୍ୟତାର ସେହି ଊଷାଲୋକ କାଳରେ ଭାରତୀୟମାନେ ଦକ୍ଷିଣ ଆମେରିକା ଯାଏ ଯାଇପାରିଥିଲେ ।

ପୃଥିବୀର ଅନ୍ୟତମ ପ୍ରାଚୀନ ସଭ୍ୟତା ମେସୋପୋଟାମିଆରୁ ମିଳିଛି ମହେଞ୍ଜୋଦାରୋର କେତେକ ପ୍ରତୀକ; ମହେଞ୍ଜୋଦାରୋରୁ ମିଳିଛି ମେସୋପୋଟାମିଆର ପ୍ରତୀକ । ଉଭୟ ସଭ୍ୟତା ଭିତରେ ଥିବା ସମ୍ପର୍କ ଏଥିରୁ ପ୍ରମାଣିତ ।





ଭାରତର ପଣ୍ଡିତମାନେ ବହୁ ଦେଶ ପର୍ଯ୍ୟଟନ କରୁଥିଲେ ଏବଂ ବିଦେଶର ଜିଜ୍ଞାସୁମାନଙ୍କ ସହ ଆଲୋଚନା କରୁଥିଲେ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତକରେ ବିଖ୍ୟାତ ଗ୍ରୀକ ଦାର୍ଶନିକ ସକ୍ରେଟିସ୍‌ଙ୍କୁ ଜଣେ ଭାରତୀୟ ପରିବ୍ରାଜକ ଭେଟିଥିବାର ପ୍ରମାଣ ରହିଛି ।



ବହୁ ଆଧ୍ୟାତ୍ମିକ ଏବଂ ଧର୍ମ ତତ୍ତ୍ୱର ଜନ୍ମ ସ୍ଥାନ ହେଲା ଭାରତବର୍ଷ । ବେଦ ଓ ଉପନିଷଦ୍‌ର ମହାନ୍ ଋଷିମାନଙ୍କ ପରେ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଭାରତରେ ଜୈନଧର୍ମର ପ୍ରବର୍ତ୍ତକ ମହାବୀର ଜୈନଙ୍କ ଅଭ୍ୟୁଦୟ ଘଟିଥିଲା ।

ସେହି ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ ଗୌତମ-ବୁଦ୍ଧ ମଧ୍ୟ । ମୁକ୍ତିର ସନ୍ଧାନୀ ଏହି ରାଜପୁତ୍ର ନିଜର ସମସ୍ତ ସୁଖ ବିଳାସବ୍ୟସନ ପରିତ୍ୟାଗ କରି ତପସ୍ୱୀ ହୋଇ ଶେଷରେ ନିର୍ବାଣର ସନ୍ଧାନ ପାଇଥିଲେ ।





ପୁରାଣରୁ ଆମେ ବହୁ ବିଶିଷ୍ଟ ରାଜାଙ୍କ ବିବରଣୀ ପାଉ । ଇତିହାସ ଦୃଷ୍ଟିରୁ ଆମେ ନନ୍ଦବଂଶର ପ୍ରତିଷ୍ଠାତା ମହାପଦ୍ମନନ୍ଦ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିବାର ଜଣାଯାଏ ।

ପ୍ରାଚୀନ ଭାରତରେ ସବୁ ଅଞ୍ଚଳ ଯେ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା, ତାହା ନୁହେଁ । ଅନ୍ୟ କେତେକ ଅଞ୍ଚଳ ଜନସାଧାରଣ ନିର୍ବାଚନ ଦ୍ୱାରା ଶାସନ ସମିତି ଗଠନ କରୁଥିଲେ । ସେମାନେ ଏକ ପ୍ରକାର ସାଧାରଣତନ୍ତ୍ର ଥିଲେ । ବହୁ ପ୍ରଦେଶରେ ବିଭକ୍ତ ହେବା ସତ୍ତ୍ୱେ ଭାରତର ଏକ ଦୃଢ଼ ସାଂସ୍କୃତିକ ଐକ୍ୟ ରହିଥିଲା ।





ସମୃଦ୍ଧ ଭାରତର ଖ୍ୟାତ ବିଦେଶୀ ରାଜା-ମାନଙ୍କୁ ଭାରତ ଆକ୍ରମଣ କରିବାକୁ ପ୍ରଲୁବ୍ଧ କଲା । ପାରସ୍ୟର ସାଇରସ୍ ହେଉଛନ୍ତି ଭାରତ ଆକ୍ରମଣକାରୀ ପ୍ରଥମ ବିଦେଶୀ ରାଜା । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ସେ ଉତ୍ତର-ପଶ୍ଚିମ ଭାରତର ଗାନ୍ଧାର ଅଧିକାର କରିଥିଲେ ।

ଦୁଇ ଶତାବ୍ଦୀ ପରେ ଆଲେକ୍‌ଜାଣ୍ଡାର ପାରସ୍ୟ ଅଧିକାର କଲେ । ଯେଉଁ ଭାରତର ଅଂଶବିଶେଷ ଅଧିକାର କରି ପାରସ୍ୟ ଏଡ଼େ ଗର୍ବ କରୁଥିଲା, ସେହି ଭାରତ-ଅଭିଯାନ ନିମନ୍ତେ ସେମାନଙ୍କ ଭିତରେ ଦେଖା ଦେଲା ଏକ ଉଚ୍ଚ ଆକାଙ୍କ୍ଷା ।





# ଅଧା ମୂଲ୍ୟ

ରଙ୍ଗନାଥ ଥିଲା ଜଣେ ସାଧାରଣ କୃଷୀ । ତାର ମାତ୍ର ଦୁଇ ଏକର ଜମି ଓ ପୂର୍ବପୁରୁଷଙ୍କ ଦ୍ୱାରା ତିଆରି ହୋଇଥିବା ଗୋଟିଏ ପୁରୁଣା ଦୁଇମହଲା କୋଠା ଥାଏ । ପରିବାର ମଧ୍ୟରେ ଝିଅଟିଏ ବିବାହଯୋଗ୍ୟା ହୋଇଗଲାଣି । ତେଣୁ ସେ ଗୋଟିଏ ଭଲ ପରିବାରର ପିଲାଟିଏ ଜ୍ୱାଇଁ କରିବା ପାଇଁ ଖୋଜୁଥାଏ ।

ଶେଷରେ ତା'ର ମନମାଫିକ ପ୍ରସ୍ତାବଟିଏ ମିଳିଲା । କିନ୍ତୁ ବରପିତା ତିନିହଜାର ଟଙ୍କା ଦାବି କଲେ । ରଙ୍ଗନାଥ ସେ ପ୍ରସ୍ତାବଟି ଛାଡ଼ିବାକୁ ଚାହୁଁ ନ ଥିଲା । ତେଣୁ ସେ ମନେ ମନେ ଠିକ୍ କଲା ଜମି ବନ୍ଧକ ରଖି କିଛି ଟଙ୍କା ଆଣି ଆଉ କିଛି କରଜ ଆଣି ବାହାଘରଟା ଚଳାଇନେବ । ସେ ଜମି ବନ୍ଧା ରଖିବାକୁ ଯୁଆଡ଼େ ଗଲା କେହି ରଖିଲେ ନାହିଁ କାରଣ ଜମି ଭଲ ଉର୍ବର ନ ଥିଲା ।

ଯାହାହେଉ କୌଣସି ଭାବରେ ଗାଁର ମହାଜନ ଶାନ୍ତିଲାଲ ଏ ଖବର ପାଇଲା । ସେ ଥିଲା ଭାରି ଲୋଭୀ ଓ କାମି । ଟଙ୍କା ଦେଖିଲେ ଯୋକ ପରି ଲାଗିଥିବ । ଏ କ୍ଷେତ୍ରରେ ଅଳ୍ପ ଦାମ୍ ଦେଇ ଜମିଟାକୁ ପୂରା ମାରିଦେବାର ଇଚ୍ଛା କରି ସେ ଏ ଦିଗରେ ଆଗେଇଗଲା ।

ରଙ୍ଗନାଥ ଏକଥା ଶୁଣି ଖୁସୀ ହୋଇଗଲା । ଶାନ୍ତିଲାଲ ବୁଝାଇ ଦେଲା ଯେ ସେ ଅଧା ଦାମ୍‌ରେ କିଣିନେବ । ପୁଣି ରଙ୍ଗନାଥର ଯେବେ ଇଚ୍ଛା ହେବ ସେ ମଧ୍ୟ ଅଧା ଦାମ୍ ଦେଇ କିଣିନେବ । ରଙ୍ଗନାଥ ବୁଝିପାରିଲା ଶାନ୍ତିଲାଲ କଥାରେ କିଛି ଗୋଲମାଲ ଅଛି । ତେଣୁ ସେ କହିଲା ଦୁଇଦିନ ଭିତରେ ଜବାବ ଦେବ ।

ସେଠାରୁ ରଙ୍ଗନାଥ ଯାଇ ଗାଁ ମୁଖିଆ

ସୁକେଶ

ରଥିଦାସ ଘରେ ପହଞ୍ଚି ସବୁ କଥା କହିଲା । ରଥିଦାସ ଶାନ୍ତିଲାଲର ବଦମାସି ବୁଝିଗଲା ଓ ତାକୁ କିଛି ଶିକ୍ଷା ଦେବାକୁ ଚାହିଁଲା । ସେ ରଙ୍ଗନାଥକୁ କହିଲା, "ଦେଖ ରଙ୍ଗନାଥ, ତୋ ଜମିର ଦାମ୍ ହେବ ଆଠହଜାର ଟଙ୍କା । ତାକୁ ଚାରି ହଜାରରେ ମାରିନେବା ପାଇଁ ଶାନ୍ତିଲାଲ ବସିଛି । ତୁ ଝିଅବାହାଘର ପରେ ଯେ ଚାରି ହଜାର ଯୋଗାଡ଼ କରି ପୁଣି ଜମି ଫେରାଇ ଆଣିବୁ ସେ ବିଶ୍ୱାସ ମୋର ନାହିଁ । ତେଣୁ ମୋ କହିବା ମତେ କାମ କଲେ ଟଙ୍କା ବି ଫେରିପାଇବୁ ଆଉ ଶାନ୍ତିଲାଲ ତା' ଜୀବନରେ ଥରେ ଶିକ୍ଷା ପାଇବ ।" ଏକଥା କହି ରଥିଦାସ ରଙ୍ଗନାଥକୁ ନିଜ ଯୋଜନା ବିଷୟରେ କହିଲା ।

ପରଦିନ ରଙ୍ଗନାଥ ପିଣ୍ଡାରେ ବସିଛି । ହଠାତ୍ ଆସି ପହଞ୍ଚିଲା ଶାନ୍ତିଲାଲ । ଠିକ୍ ସେତିକବେଳେ ରଥିଦାସ ମଧ୍ୟ ଆସି ପହଞ୍ଚିଲା । ଶାନ୍ତିଲାଲ କହିଲା, "ଆଚ୍ଛା ଆପଣ ତ ଠିକ୍ ସମୟରେ ଆସିଛନ୍ତି । ଆମ ଚୁକ୍ତିରେ ସାକ୍ଷୀ ପଡ଼ିବେ ।"

ରଥିଦାସ ପଚାରିଲା, "କିନ୍ତୁ କଥା କ'ଣ ?"

ରଙ୍ଗନାଥ କହିଲା, "ଦେଖନ୍ତୁ, କଥା ହେଉଛି ମୋ ଜମି ସେ ଅଧା ଦାମ୍‌ରେ କିଣିବାକୁ ଚାହାନ୍ତି । ପୁଣି ମୁଁ ଯେତେବେଳେ ଅଧା ଦାମ୍ ଦେବି ସେ ତାହା ଫେରାଇ ଦେବେ । ମୋର ତ ଝିଅ ପାଇଁ ଟଙ୍କାର ଖୁବ୍ ପ୍ରୟୋଜନ । ତେଣୁ ପଁ ଦୋଣ୍ଡିଏ ହଜାରର ମୋ ଘର ଦଣ



ହଜାରରେ ଶାନ୍ତିଲାଲଙ୍କୁ ଠକିବାକୁ ଚାହୁଁଛୁ । କ'ଣ ମୁଁ ଠିକ୍ କହୁଛୁ ନା ଶାନ୍ତିଲାଲ ?"

ଶାନ୍ତିଲାଲ ଏତେ ଖୁସୀ ହୋଇଗଲା ଯେ ଯେପରି ତା'ର ଦଶଆଙ୍ଗୁଠି ଘିଅରେ ବୁଡ଼ିଛି । ରଙ୍ଗନାଥ ଦଶ ବାର ଥର ପୁନର୍ଜନ୍ମ ନେଲେ ମଧ୍ୟ ଟଙ୍କା ଶୁଝିପାରିବ ନାହିଁ । ଏଣେ ଏତେ କମ୍ ଦାମ୍‌ରେ ଏଡ଼େ ବଡ଼ ଘର ସହଜରେ ମିଳିଗଲା ।

ବର୍ତ୍ତମାନ ପୂର୍ବ ସର୍ତ୍ତ ଅନୁସାରେ ଗ୍ରାମ ମୁଖିଆ ରଥିଦାସଙ୍କ ଉପସ୍ଥିତିରେ ସବୁ ଲେଖାଲେଖି ହୋଇଗଲା । ରଥିଦାସ ସାକ୍ଷୀ ପଡ଼ିଲେ । ଦଶ ହଜାର ଟଙ୍କା ନେଇ ରଙ୍ଗନାଥ ଚାଲିଗଲା ।

ତା'ପରେ ବିବାହର ଦିନ ସ୍ଥିର ହେଲା । ବିବାହଦିନ ଶାନ୍ତିଲାଲ ଦୁଇଚାରି ଜଣ ଲୋକ ନେଇ ଟଙ୍କା ଆଦାୟ କରିବାକୁ ଆସିଲା । ଶୁଭକାର୍ଯ୍ୟରେ ବିଘ୍ନ ଘଟାଇବା ତା'ର ଅଭ୍ୟାସ; କହିଲା, "ଘରଟା ତ ମୋତେ ବିକିଦେଇଛ, ପୁଣି ଏଠାରେ ବାହାଘର କରୁଛ କପରି ? ଏଠି କିଛି ହୋଇପାରିବ ନାହିଁ । ଚାହଁ ତ ଟଙ୍କା ଫେରାଇ ଦେଇ ନିଜ ଘର ନିଜର ରଖ ।"

ରଙ୍ଗନାଥ ଅଳ୍ପ ହସି ବିବାହରେ ନିମନ୍ତ୍ରିତ ହୋଇଥିବା ଗାଁ ମୁଖିଆ ରଥିଦାସଙ୍କୁ ଚାହିଁଲା । ରଥିଦାସ ଠାରିଦେଲେ କି ଯୋଜନା ମୁତାବକ କାମ କର ।

ତା'ପରେ ରଙ୍ଗନାଥ ନିଜ ଘର ଭିତରକୁ ଛୁଟିଯାଇ ପାଞ୍ଚ ହଜାର ଟଙ୍କା ନେଇଆସି



ଶାନ୍ତିଲାଲଙ୍କୁ ଦେଇ କହିଲା, "ଟଙ୍କା ନିଅ ମୁଁ ପୁଣି ତୁମଠୁ ମୋ ଘର କିଣିନେଲି । ଭଦ୍ର ଘରରେ ବୁଲିଆସିଛ କୁଣିଆ ହୋଇ । ମୋ ଝିଅ ଜ୍ୱାଇଁଙ୍କୁ ଆଶୀର୍ବାଦ କରି ଯାଅ ।"

ଶାନ୍ତିଲାଲ ରାଗରେ ଲାଲ ହୋଇଯାଇ କହିଲା, "ଏ ରଙ୍ଗନାଥ, କ'ଣ ମଜା କରୁଛୁ ? ଆଉ ପାଞ୍ଚହଜାର ଚୁପ୍‌ଚାପ୍ ଦେଇଦେ । ମୁଖିଆ, ତୁମେ କ'ଣ କହୁଛ ?"

"ମୁଁ କ'ଣ କହିବି । ତୁମେ ଯାହା ଲେଖିଛ ତାହା ତ ଅକ୍ଷରେ ଅକ୍ଷରେ ପାଳନ କରା-ଯାଉଛି ।" ଗ୍ରାମ ମୁଖିଆ ପକେଟ୍‌ରୁ କାଗଜ ବାହାର କରି କହିଲେ ।

"କପରି ଅକ୍ଷରେ ଅକ୍ଷରେ ପାଳନ କରା-ଯାଉଛି ସମସ୍ତଙ୍କ ସାମନାରେ ପ୍ରମାଣ କର ।" ଶାନ୍ତିଲାଲ କହିଲା ।

କହିବା ବାହୁଲ୍ୟ, ଶାନ୍ତିଲାଲ ଯେତେବେଳେ ରଙ୍ଗନାଥ ଅଧା ଦାମ୍‌ରେ ଘର କିଣିନେଇପାରିବ ବୋଲି ସର୍ତ୍ତ ରଖିଥିଲା, ସେତେବେଳେ ସେ ନିଜେ କିଣିଥିବା ଅଧା ଦାମ୍‌ର ଅଧା ବୋଲି ବୁଝାଉଥିଲା ।

"ତେବେ ତୁମେ ଭଲ କରି ଶୁଣ । ରଙ୍ଗନାଥ ଅଧା ଦାମ୍‌ରେ ତୁମକୁ ବିକି କଲା । ମାନେ ଦଶହଜାରରେ । ତୁମେ କହିଥିଲ, ଯେତେ-ବେଳେ ସେ ପୁଣି କିଣିବ ସେତେବେଳେ ଆହୁରି ଅଧା ଦାମ୍‌ରେ ନେବ । ଏ କ୍ଷେତ୍ରରେ ରଙ୍ଗନାଥ ଅଧା ଦାମ୍ ଦେଇସାରିଛି । ତୁମେ ସେଇ ସର୍ତ୍ତ ମାନିଯାଇ ଦସ୍ତଖତ ମଧ୍ୟ କରିଛ । ଏବେ ସେ ଅଧା ଦାମ୍ ବା ପାଞ୍ଚହଜାର ଦେଇ କିଣିନେଇଛି । ଆଉ ଘରଉପରେ ତୁମର ଅଧି-କାର ନାହିଁ ।" ମୁଖିଆ ରଥିଦାସ କହିଲା ।

ରଙ୍ଗନାଥର ଘରକୁ ଶସ୍ତାରେ ମାରିନେବାକୁ ଶାନ୍ତିଲାଲ ଚାହିଁଥିଲା । କିନ୍ତୁ ନିଜେ ହଇରାଣରେ ପଡ଼ିଲା । ଏହା ପରଠୁ ଶାନ୍ତିଲାଲ କେବେ ଆଉ ସେପରି କରିନାହିଁ ।



# ଚୁପ୍‌ଚାପ୍ !

ଥରେ ଜଣେ ବିଶିଷ୍ଟ ଭଦ୍ରଲୋକ ଜାହାଜରେ ବିଦେଶ ଯାଉଥିଲେ । ଜାହାଜର କପ୍ତାନଙ୍କ ସମେତ ଅନେକ ଲୋକ ତାଙ୍କୁ ଖାତିର କରୁଥିଲେ ।

ତାଙ୍କୁ ଈର୍ଷ୍ୟା କରୁଥିବା ଜଣେ ଯାତ୍ରୀ ତାଙ୍କୁ ବଦନାମ କରିବା ମାନସରେ ଗୋଟିଏ ନାଲ ଥଳିରେ ଶହେ ମୋହର ନେଇ ଗୋପନରେ ତାଙ୍କ ଜିମା ଦେଲା । ତା'ପରେ ସେ ଯାଇ କପ୍ତାନଙ୍କୁ ଚୁପ୍‌ଚାପ୍ କହିଲା କି ଗୋଟାଏ ନାଲ ଥଳିରେ ଥିବା ତା'ର ଶହେ ମୋହର କିଏ ଚୋରି କରି ନେଇଛି ।

କପ୍ତାନ ଅସ୍ୱନକ ସବୁ ଯାତ୍ରୀଙ୍କ ଜିନିଷପତ୍ର ଖାନ୍‌ତଲାସ କଲେ । କିନ୍ତୁ ସେ ବିଶିଷ୍ଟ ଭଦ୍ର-ଲୋକଙ୍କ ଜିନିଷପତ୍ରରେ ହାତ ଦେଲେ ନାହିଁ ।

ଅଭିଯୋଗକାରୀ ଚୁପ୍‌ଚାପ୍ କପ୍ତାନଙ୍କୁ ଫୁସୁଲେଇବାକୁ ଲାଗିଲା, "ତାଙ୍କୁ ବାଦ ଦେଲେ କାହିଁ ?" ଭଦ୍ରଲୋକ ଏହା ଶୁଣିପକାଇଲେ ଓ ନିଜେ କପ୍ତାନଙ୍କୁ ଅନୁରୋଧ କରି ତାଙ୍କ ଜିନିଷପତ୍ର ତଲାସ୍ କରାଇଲେ । ମୋହର ଥଳି ଅବଶ୍ୟ ମିଳିଲା ନାହିଁ ।

ସେ ଈର୍ଷ୍ୟାଳୁ ଯାତ୍ରୀ ପରେ ଯେତେବେଳେ ତା' ମୋହର ଥଳି ମାଗିଲା, ସେ କହିଲେ, "ତୁମେ ମୋତେ ଯେମିତି ଚୁପ୍‌ଚାପ୍ ତାହା ଦେଇ ଚୁପ୍‌ଚାପ୍ କପ୍ତାନଙ୍କୁ ଯାଇ ତାହା ଚୋରି ହୋଇଛି ବୋଲି କହି ମୋତେ ତଲାସ୍ କରିବାକୁ କହିଲ, ମୁଁ ସେମିତି ଚୁପ୍‌ଚାପ୍ ତାହା ସମୁଦ୍ରକୁ ଫିଙ୍ଗିଦେଲି । ବର୍ତ୍ତମାନ ତୁମେ ବି ଚୁପ୍‌ଚାପ୍ ରୁହ । ପୁଣି କୌଣସି ଅଭିଯୋଗ କଲେ ତୁମକୁ ସମସ୍ତେ ପାଗଳ ବୋଲି ଭାବିବେ ।"





# ଜନପଦରେ ପିଶାଚ

ଥରେ ଦୁଇ ପିଶାଚ-ବନ୍ଧୁ ଆପଣା ଭିତରେ କଥାବାର୍ତ୍ତା ହେଲେ, "ପିଶାଚପୁରୀରେ ରହି ରହି ଆଉ ଭଲ ଲାଗୁନାହିଁ । ଚାଲ ମଣିଷ-ସମାଜକୁ ଯିବା । ଥୋକେ ଲୋକଙ୍କୁ ଜଲବଲ କଲେ ମଜା ଲାଗିବ ।"

ଦୁଇ ପିଶାଚବନ୍ଧୁ ମଣିଷ ରୂପ ଧରି ଗୋଟାଏ ଗାଁରେ ପହଞ୍ଚିଲେ ଓ ଜଣେ କୃଷକକୁ କହିଲେ, "ବାବୁ, ଆମେ ମୂଲ ଲାଗି ପେଟ ପୋଷିବାକୁ ବାହାରିଛୁ । କିଛି କାମ ଦେବେ ?"

କୃଷକ କହିଲା, "ଦେଖ, ମୋର ଦୁଇ ହଳ ବଳଦରୁ ହଳେ ମରିଗଲେ, ହଳେ ରୋଗିଣ ହୋଇଗଲେ । ତୁମ୍ଭେମାନେ ଲଙ୍ଗଳରେ ଯୋଚି ହୋଇ ହଳ କରିବ ?"

"ସିଏ କ'ଣ କହୁଛନ୍ତି ? ମଣିଷ କ'ଣ ବଳଦର ସ୍ଥାନ ନେବା ସମୀଚିନ ?" ପିଶାଚ-ମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"କାହିଁକି ? ମଣିଷ'ତ ବଳଦଙ୍କ ତୁଳନାରେ ଶସ୍ତାରେ କାମ ଦେବେ । ମୁଁ ଦୁଇ ହଳ ମଣିଷ ଲଗାଇ ସାରିଲିଣି । ତୁମେ ଦୁହେଁ ରାଜି ହେଲେ ତିନୋଟି ହଳ ବୁଲାଇ ସହଜ ସହଜ ଜମି ଚଷିପକାଇବ । ରାଜି ?" କୃଷକ ଟେକ୍-ଟୋକ୍ ପଚାରିଲା ।

ଅଭିଜ୍ଞତା ଅର୍ଜନ ସକାଶେ ପିଶାଚ-ବନ୍ଧୁ ଦୁଇଟି ରାଜି ହେଲେ ଓ ଜମିକୁ ଯାଇ ବଳଦଙ୍କ ବଦଳରେ ଲଙ୍ଗଳ ଟାଣିଲେ । ସେ ହାଡ଼ଭଙ୍ଗା ପରିଶ୍ରମରେ ସେମାନେ ବେଦମ ହୋଇପଡ଼ିଲେ । ଶେଷକୁ ମଜୁରି ଯାହା ମିଳିଲା, ତାହା ସାମାନ୍ୟ । ସେମାନେ ଦିନଟିଏ କାମ କରି ସେଠାରୁ ପଳାଇଗଲେ ।

"ଏ ଲୋକଟା ଖରାପ ହୋଇପାରେ; କିନ୍ତୁ

ଥରେ ଯେତେବେଳେ ମଣିଷସମାଜ ଭିତରକୁ ଆସିଛୁ, ସେତେବେଳେ ହତୋତ୍ସାହ ନ ହୋଇ ଆହୁରି କିଛି ହାଲ୍‌ଚାଲ୍ ବୁଝିବା ଲୋଡ଼ା ।" ଜଣେ ପିଶାଚ କହିଲା ।

ଅନ୍ୟ ଜଣକ ସେଥିରେ ରାଜି ହେଲା ।

ତା'ପରେ ପହଞ୍ଚିଲେ ଜଣେ ଦୋକାନଦାର ପାଖରେ । ସେ ଦୁଇ ପିଶାଚଙ୍କୁ ଗୋଟାଏ ଅନ୍ଧକାର କୋଠରି ଭିତରକୁ ଡାକି ନେଇଯାଇ କହିଲା, "ବନଯାକ ଏଇଠି ଏ ଫଳରୁ ତେଲ ବାହାର କର । ଖବରଦାର କାହାକୁ କିଛି କହିବ ନାହିଁ ।"

ପିଶାଚମାନେ ସେ ଫଳ ଦେଖି ଚମକି ଉଠିଲେ ଓ ପଚାରିଲେ, "ଆଜ୍ଞା, ଏ ଫଳ ତ ଜହର ଭଳି ! ଏହାର ତେଲ ନେଇ ଆପଣ କରିବେ କ'ଣ ?"

"ତୁମର ସେଥିରେ କ'ଣ ଦରକାର ? ତୁମେ ଖଟିବ, ପଇସା ନେବ ।" ରୁକ୍ଷ ସ୍ୱରରେ ଦୋକାନଦାର କହିଲା ।

"ଆଜ୍ଞା, ଏ ତେଲ ମଣିଷଙ୍କ ଆହାର୍ଯ୍ୟ ତେଲରେ ମିଶାଇବେ ନାହିଁ ତ ?" ପିଶାଚମାନେ ପଚାରିଲେ ।

ଦୋକାନଦାର ସେମାନଙ୍କୁ କଟମଟ କରି ଅନାଇ କହିଲା, "ତୁମମାନଙ୍କ ସାହସ ତ କମ୍ ନୁହେଁ ? ମୁଁ କ'ଣ କରିବି ନ କରିବି, ସେଥିରେ ତୁମର ଅଛି କ'ଣ ?"

"କିଛି ନାହିଁ ଯେ, ଖାଲି କୌତୂହଳ ଯୋଗୁଁ



ପଚାରୁଥିଲୁ ।" ପିଶାଚମାନେ କହିଲେ ।

"ନ ମିଶାଇଲେ ଚଳିବ କିପରି ? ସାଧାରଣ ଲୋକେ ଶସ୍ତାରେ ତେଲ ଚାହାନ୍ତି । ଭେଜାଲ ନ ମିଶାଇଲେ ଶସ୍ତାରେ ଦେବି କିପରି ? ଯିଏ ବେଶୀ ପଇସା ଦେଇ ବିଶୁଦ୍ଧ ତେଲ ଚାହିଁବ, ସେ ପାଇବ ।" ଦୋକାନଦାର କହିଲା ।

"ଆଜ୍ଞା ଇଏ ଭଲ କଥା ନୁହେଁ । ଆମେ ଯାଉଛୁ ।" ଦୁଇ ପିଶାଚ କହିଲେ ।

"ଯାଉଛ ? କ'ଣ ମୋ ସହ ତାମସା କରୁଥିଲ ? ମୋ ବେପାରର ରହସ୍ୟ ଜାଣିବାକୁ ଆସିଥିଲ ? ଏ ଘରୁ ବାହାରିପାରିବ ନାହିଁ ।" ଧମକ ଦେଲା ବେପାରୀ ।

ସଙ୍ଗେ ସଙ୍ଗେ ପିଶାଚ ଦୁଇଟି ଉଭାନ ହୋଇ ପଳାଇଗଲେ ।

ରାଜାଙ୍କୁ ସବୁ ଜଣାଇବାର ସିଦ୍ଧାନ୍ତ କରି ପିଶାଚ ଦୁଇଜଣ ଦରବାରରେ ପହଞ୍ଚିଲେ । ସେମାନେ ସିପାହି ବେଶ ହୋଇ ଯାଇଥା'ନ୍ତି ।

ରାଜା ସେତେବେଳେ ସେନାପତିଙ୍କୁ ଧମକ ଦେଉଥା'ନ୍ତି, "ଲୋକେ ନୂଆ କର ଦେବାକୁ ନାମଙ୍ଗ ହେଉଛନ୍ତି ଯଦି, ତୁମେ ସିପାହିମାନଙ୍କୁ ସେମାନଙ୍କ ଘର ଲୁଟ୍‌ତରାଜ୍ କରି ଆମ କର ଅସୁଲ କରିବାକୁ ନିର୍ଦ୍ଦେଶ ଦେଇ ପାରୁ ନ ? ମୁଁ ଚଳିଲି । ନର୍ତ୍ତିକା ଅପେକ୍ଷା କରିଛି ।"

ସେନାପତି ପିଶାଚ ଦୁଇଙ୍କୁ ସିପାହି ମଣି କହିଲେ, "ଶୁଣିଲଟି ? ଯାଅ । ଅନ୍ୟ ସିପାହି-ମାନଙ୍କୁ କହିଦିଅ ।"

ପିଶାଚ ଦୁଇଜଣ ନିଜ ପୁରୀକୁ ଫେରି ଆସିଲେ । ଜଣେ ବୁଢ଼ା ପିଶାଚ ସେମାନଙ୍କୁ ପଚାରିଲା, "କହୋ, ଏଡ଼େ ସହଳ ?"

"ଆମ ଆଗରୁ ଆଉ କୌଣସି ପିଶାଚପୁରୀରୁ ଥୋକେ ପିଶାଚ ଯାଇ ମଣିଷ ରୂପରେ ସମାଜକୁ ଆୟତ୍ତ କରି ନେଇଛନ୍ତି । ସେମାନେ ଆମଠାରୁ ବହୁତ ଭୟଙ୍କର । ଆମେ ଆଉ କ'ଣ କରନ୍ତୁ ?" ଦୁଇ ପିଶାଚ କୈଫିୟତ ଦେଲେ ।



# ବାଜି

ମଙ୍ଗଳ ଓ କମଳ ନାମକ ଦୁଇ ବନ୍ଧୁ ରାଜାଙ୍କ ପାଖରେ ଯାଇ ନ୍ୟାୟ ପ୍ରାର୍ଥନା କଲେ । କଥା ହେଲା, 'ଦୁଇ ଜଣ କୌଣସି ବିଷୟରେ ବାଜି ଲଗାଇଥିଲେ । ମଙ୍ଗଳ ହାରିଗଲେ ଦୁଇ ଶହ ଟଙ୍କା ଦେବ ବୋଲି କହିଥିଲା । କିନ୍ତୁ ହାରିଯାଇ ସେ କମଳକୁ ଦୁଇ ଟଙ୍କା ଦେଉଛି ।

ରାଜା ମଙ୍ଗଳକୁ କୈଫିୟତ୍ ମାଗନ୍ତେ, ସେ କହିଲା "ପ୍ରଭୁ ! କମଳ ଯେତେବେଳେ ହାରିଗଲେ ଶହେ ଟଙ୍କା ଦେବ ବୋଲି କହିଲା, ମୁଁ କହିଲି ମୁଁ ଦେବି ଦୁଇ ଶହ ! ପ୍ରକୃତରେ ମୁଁ ଦୁଇ ଶହ ପଇସା ବୋଲି ବୁଝାଉଥିଲି । ଟଙ୍କା ନୁହେଁ ।"

ରାଜା ମଙ୍ଗଳର ଚତୁରତାରେ ପ୍ରୀତ ହୋଇ ତା' ତରଫରୁ କମଳକୁ ଦୁଇଶହ ଟଙ୍କା ଦେଲେ ଓ ମଙ୍ଗଳକୁ ଦରବାରରେ ଚାକିରି ଦେଲେ ।

ପରଦିନ ପୁଣି ଦୁଇ ବନ୍ଧୁ ଆସି ପୁଣି ହେଲେ ଫେରାଦ । କଥା କ'ଣ ? କମଳର ଅଭିଯୋଗ, ଦୁଇ ବନ୍ଧୁ ରାସ୍ତାରେ ଗଲା ବେଳେ ଶହେ ଟଙ୍କା ପଡିଥିବାର ମଙ୍ଗଳ ଦେଖିଲା । ମଙ୍ଗଳ ସେ ଟଙ୍କା ପ୍ରଥମେ ଦେଖିଥିବା ଉଠାଇଥିବା ସ୍ଥଳେ ତାହା ପୁରାପୁରି ତା'ର ପ୍ରାପ୍ୟ । କିନ୍ତୁ ସେ କମଳକୁ ଅଧା ନେବାକୁ ବାଧ୍ୟ କରୁଛି ।

ରାଜା ଦେଖିଲେ କମଳ ଏଡ଼େ ସାଧୁ ଯେ ସେ ଯାଚି ଟଙ୍କା ଫେରାଇଦେଉଛି । ରାଜା କମଳକୁ ବି ଚାକିରି ଦେଲେ । ତା'ପରେ ରାଜା କୌତୂହଳ ବଶତଃ ପଚାରିଲେ, "ଗତକାଲି ତୁମେ ଦୁହେଁ କ'ଣ ବାଜି ଲଗାଇଥିଲ ?" ସେମାନେ ମାନିଗଲେ : ମଙ୍ଗଳ କହିଥିଲା କି ସେ ଯେ କେବଳ ନିଜ ପାଇଁ ଦରବାରରେ ଚାକିରି ଯୋଗାଡ଼ କରିଦେବ, ସେତିକି ନୁହେଁ, କମଳ ପାଇଁ ମଧ୍ୟ ଯୋଗାଡ଼ କରିଦେବ ।





# କର୍ମ ଓ ପ୍ରେରଣା

ଅନେକଦିନ ତଳର କଥା । ଜଣେ ସାଧୁ ଥିଲେ । ନାମ ରାମାନନ୍ଦ । ସେ ଥିଲେ ଜଣେ ଭଲ ବକ୍ତା । ବିଶେଷତଃ ଶ୍ରୀମଦ୍ ଭଗବତ୍ ଗୀତା ଉପରେ ସେ ଯେତେବେଳେ ବ୍ୟାଖ୍ୟାନ ଦେଉଥିଲେ, ସେତେବେଳେ ସମସ୍ତେ ମୁଗ୍ଧ ହୋଇ ତାଙ୍କ ବକ୍ତୃତା ଶୁଣୁଥିଲେ ।

ସ୍ୱାମୀ ରାମାନନ୍ଦଙ୍କର ଅନେକ ଶିଷ୍ୟ ଓ ଭକ୍ତ ଥିଲେ । ସେମାନେ ମଧ୍ୟେ ମଧ୍ୟେ ତାଙ୍କୁ ସୁନା ରୂପା ଭେଟି ଦେଉଥିଲେ । ସ୍ୱାମୀଜୀ ସ୍ଥିର କରିଥିଲେ, ଯଥେଷ୍ଟ ଅର୍ଥ ଜମା ହେବା ପରେ ସେ ଗରିବ ଲୋକଙ୍କ ସକାଶେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ଖୋଲିବେ ।

ସ୍ୱାମୀଜୀଙ୍କର ଜଣେ ଚେଲା ଥିଲା । ନାମ ଆଦିତ୍ୟ । ଥରେ ଆଦିତ୍ୟକୁ ଧରି ସ୍ୱାମୀଜୀ ବଣୁଆ ରାସ୍ତା ଦେଇ ସ୍ଥାନାନ୍ତରକୁ ଯାଉଥିଲେ । ଆଦିତ୍ୟର ବିଶେଷ ଶିକ୍ଷା ଦୀକ୍ଷା ନ ଥିଲା କିନ୍ତୁ ସେ ତା' ଗୁରୁଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲା । ଗୁରୁ ଯେଉଁ ନିର୍ଦ୍ଦେଶ ଦେଉଥିଲେ, ତାହା ସେ ପ୍ରାଣପାତ କରି ପାଳନ କରିବାକୁ ପ୍ରସ୍ତୁତ ଥିଲା ।

ବାଟରେ ସ୍ୱାମୀଜୀଙ୍କୁ ଆଦିତ୍ୟ ପଚାରିଲା, "ଗୁରୁଦେବ ! କୁରୁ-ପାଣ୍ଡବ ଯୁଦ୍ଧରେ ଲଢ଼ିଲେ ଅର୍ଜୁନ । ଶ୍ରୀକୃଷ୍ଣ କେବଳ ତାଙ୍କୁ ଉପଦେଶ ଦେବା ଛଡ଼ା ଆଉ ଅଧିକ କ'ଣ କରିଥିଲେ ? ଅଥଚ ସମସ୍ତେ ଶ୍ରୀକୃଷ୍ଣଙ୍କୁହିଁ ଯୁଦ୍ଧରେ ପାଣ୍ଡବ ପକ୍ଷର ଜୟଲାଭ ସକାଶେ ଅଭିନନ୍ଦନ ଜଣାନ୍ତି । ଏହା ଭୁଲ ନୁହେଁ କି ?"

ସ୍ୱାମୀଜୀ ହସିଲେ, ଓ କହିଲେ "ବାପା, ତୋ ପ୍ରଶ୍ନର ଉତ୍ତର ଉପଯୁକ୍ତ ସମୟ ଦେଖି ଦେବି ।"

ସେମାନେ ଘନ ଜଙ୍ଗଲ ଭିତରେ ପଶୁ-

ଜାନକୀପ୍ରସାଦ

ଥିଲେ । ସ୍ୱାମୀଜୀ ଆଦିତ୍ୟଙ୍କୁ କହିଲେ, "ତୁ ଖଣ୍ଡିଏ ଟାଣୁଆ ଲଠି ସଂଗ୍ରହ କର ।"

ଆଦିତ୍ୟ ଖଣ୍ଡିଏ ଶକ୍ତ ଡାଳ ଭାଙ୍ଗି ସେଥିରେ ଲଠି ବନାଇଲା । ଦୁହେଁ ବଣ ଭିତରେ ପଶିଲେ ।

ହଠାତ୍ ଗୋଟାଏ ଡାକୁ ବନ୍ଧୁକ ବାଗେଇ ଧରି ପାଟି କରି କହିଲା, "ପାଖରେ ଯାହା ଟଙ୍କା ସୁନା ଅଛି ଦେଇଦିଅ । ନହେଲେ ଗୁଳିରେ ମୁଣ୍ଡ ଉଡ଼ାଇ ଦେବି ।"

ଆଦିତ୍ୟ ଭୟଭୀତ ହୋଇ ସ୍ୱାମୀଜୀଙ୍କୁ କହିଲା, "ଗୁରୁଦେବ, ବନ୍ଧୁକ ଆଗରେ ଆମେ କରିବା କ'ଣ ? ସେ ଥଳି ତାକୁ ଦେଇ ଦିଅନ୍ତୁ ।"

ଡାକୁ ବୁଝିଲା ଯେ ସେମାନଙ୍କ ପାଖରେ ସତରେ ଟଙ୍କାପଇସା ଅଛି । ସେ ପୁଣି ଧମକ ଦେଲା, "ଶୀଘ୍ର ଦେଇଦିଅ । ନହେଲେ ଗୁଳି ଚଳାଇବି ।"

ସ୍ୱାମୀଜୀ କହିଲେ, "ବାବୁ, ଏହା ଗରିବ ଲୋକଙ୍କ ଉପକାର ପାଇଁ ସଞ୍ଚିଥିଲି । ତୁମେ ଏମିତି ଛଡ଼ାଇ ନେବା କ'ଣ ଭଲ ହେବ ?"

ଡାକୁ ଅଟ୍ଟହାସ୍ୟ କରି କହିଲା, "ସେ ଭଳି କୈଫିୟତ ଅନେକ ଶୁଣିଛି ।" ଏହା କହି ସେ ସ୍ୱାମୀଜୀଙ୍କ ଥଳି ଛଡ଼ାଇନେଲା ।

ସ୍ୱାମୀଜୀ କାତର କଣ୍ଠରେ ଡାକୁକୁ କହିଲେ, "ବାବୁ, ଜୀବନସାରା ଯାହା ସଞ୍ଚିଥିଲି, ଯେଉଁ ଧନରେ ଗରିବଙ୍କ ପାଇଁ କିଛି କାମ କରିବି ବୋଲି ସ୍ୱପ୍ନ ଦେଖୁଥିଲି, ତାହା ଯଦି ନେଇ-



ଗଲ ମୋତେ ଆଉ ପ୍ରାଣରେ ଛାଡ଼ିଦେଉଛ କାହିଁକି ? ଗୋଟାଏ ଉପକାର କର । ମୋତେ ମାରିଦେଇ ଦୁଃଖରୁ ମୁକ୍ତ କର ।"

ଡାକୁ ସଗର୍ବ ହସ ହସି କହିଲା, "ସ୍ୱାମୀଜୀ ! ଏ ବନ୍ଧୁକ କ'ଣ ସତ ବନ୍ଧୁକ ଯେ ତୁମକୁ ମାରିବ ?"

ତତ୍‌କ୍ଷଣାତ୍ ସ୍ୱାମୀଜୀ ଆଦିତ୍ୟକୁ କହିଲେ, "ମୋ ସନ୍ଦେହ ଠିକ୍ । ଆଉ ବିଳମ୍ବ କାହିଁକି ? ତୋ ବଳ ଦେଖା ।"

ସଙ୍ଗେ ସଙ୍ଗେ ଆଦିତ୍ୟ ତା' ଲାଠି ଡାକୁ ପିଠିରେ ବସାଇଦେଲା । ଡାକୁ ତଳେ ପଡ଼ିଗଲା । ତାକୁ ସେ ଗୋଟାଏ ଗଛରେ ବାନ୍ଧିଦେଲା । ସ୍ୱାମୀଜୀ କହିଲେ, "ବାବୁ, ମୋ ଅନୁରୋଧ ରକ୍ଷା କରି ଯଦି ଗରିବଙ୍କ ଧନକୁ ଛାଡ଼ିଦେଇଥା'ନ୍ତ, ତେବେ ଏ ଦୁର୍ଦ୍ଦଶା ହୋଇ ନ ଥାନ୍ତା । ତୁମ ବନ୍ଧୁକ ଯେମିତି ହଲୁଥିଲା, ସେଥିରୁ ବୁଝିଲି ତାହା କାଠବନ୍ଧୁକ । ତୁମ ମୁହଁରେ ସ୍ୱୀକାର କରାଇନେଲି । ଥାଅ । ଆମେ ଚାଲିଲୁ ।"

ଡାକୁ ବନ୍ଧା ହୋଇ ଜୁଳୁଜୁଳୁ କରି ସେମାନଙ୍କ ଗତ ପଥକୁ ଅନାଇ ରହିଲା ।

କିଛି ବାଟ ଯିବା ପରେ ଆଦିତ୍ୟ କହିଲା, "ଗୁରୁଦେବ ! ଧନ୍ୟ ଆପଣଙ୍କ ଦୂରଦୃଷ୍ଟି ଓ ବୁଦ୍ଧି । ଆପଣଙ୍କ କଥା ଶୁଣି ଲାଠି ସଂଗ୍ରହ ନ କରିଥିଲେ ଆଜ ସବୁ ଯାଇଥିଲା । ପୁଣି ଆପଣ ଡାକୁକୁ ବି ବୋକା ବନାଇଦେଲେ !"

"କିନ୍ତୁ ଲାଠି ଚଳାଇଲୁ ତ ତୁ !" ସ୍ୱାମୀଜୀ କହିଲେ ।

"କିନ୍ତୁ ଆପଣ ନ ଥିଲେ ମୁଁ କ'ଣ ତାହା କରିଥାନ୍ତି ?" ଆଦିତ୍ୟ କହିଲା ।

"ଏଥର ଶ୍ରୀକୃଷ୍ଣଙ୍କ ତାତ୍ପର୍ଯ୍ୟ ବୁଝିଲୁ ତ ? ତାଙ୍କ ପ୍ରେରଣା ବିନା ଅର୍ଜୁନ କିଛି କରିପାରି ନ ଥାନ୍ତେ ।" ସ୍ୱାମୀଜୀ ବୁଝାଇ ଦେଲେ । ଆଦିତ୍ୟ ତୃପ୍ତ ହେଲା ।





# ଦେବୀ ଭାଗବତ

ସୂର୍ଯ୍ୟବଂଶରେ ଶ୍ରୀରାମଚନ୍ଦ୍ରଙ୍କ ଜନ୍ମର ବହୁ ପୂର୍ବରୁ ତ୍ରିଶଙ୍କୁ ନାମରେ ଜଣେ ରାଜା ଥିଲେ । ବିଶ୍ୱାମିତ୍ର ତାଙ୍କ ପ୍ରତି କୃପାପରବଶ ହୋଇ ତାଙ୍କୁ ସ୍ୱର୍ଗରେ ସ୍ଥାନ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଯେତେବେଳେ ତାହା ସେ କରାଇପାରିଲେ ନାହିଁ, ସେତେ-ବେଳେ ସେ ତ୍ରିଶଙ୍କୁଙ୍କ ସକାଶେ ଏକ ନୂତନ ସ୍ୱର୍ଗହିଁ ସୃଜନ କଲେ ।

ରାଜା ତ୍ରିଶଙ୍କୁଙ୍କର ହରିଶ୍ଚନ୍ଦ୍ର ନାମରେ ପୁତ୍ର ଥିଲେ । ବହୁ କାଳ ଧରି ତାଙ୍କର କୌଣସି ସନ୍ତାନ ନ ହେବାରୁ ସେ ଦିନେ ବରୁଣଦେବଙ୍କୁ ସ୍ତୁତି କରି କହିପକାଇଲେ, "ପୁଅଟିଏ ହେଲେ ବରଂ ତାକୁ ଆପଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦେବି, କିନ୍ତୁ ପୁଅଟିଏ ହେଉ ।"

ବରୁଣଙ୍କ ବରରେ ତାଙ୍କର ପୁଅ ହେଲା । ରାଜ୍ୟ ବ୍ୟାପି ବିରାଟ ଉତ୍ସବ ପାଳନ କରାହେଲା ।

ବରୁଣ ବ୍ରାହ୍ମଣ ବେଶ ଧରି ଆସି ପହଞ୍ଚି କହିଲେ, "ରାଜା, ପୁଅ ତ ହେଲା । ବର୍ତ୍ତମାନ ତୁମ ସର୍ତ୍ତ ରକ୍ଷା କର । ମୋ ଉଦ୍ଦେଶ୍ୟରେ ଯଜ୍ଞ କରି ସେଥିରେ ପୁଅକୁ ଉତ୍ସର୍ଗ କର ।"

ରାଜା ଚମକିଉଠିଲେ ଓ କହିଲେ, "ଆଜ୍ଞା, ପୁଅ ଏ ଯାଏ ଅନ୍ତୁଡ଼ିଶାଳରୁ ଆସିନାହିଁ । ଉତ୍ସର୍ଗ କରିବା କଥା ଉଠାଉଛନ୍ତି କିପରି ? ଅନ୍ତତଃ ମାସଟିଏ ଯାଉ !"

ମାସକ ପରେ ବରୁଣ ଫେରିଆସି ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା କିଛି ନ ଜାଣିଲା

ଶୁନଃଶେପର ଅମର କାହାଣୀ



ପରି ପଚାରିଲେ, "କୁଆଡ଼େ ଆସିଲେ, ଆଜ୍ଞା କରନ୍ତୁ ।"

"କୁଆଡ଼େ ଆସିଲି ? ତୁମେ ମୋତେ ମାସେ ପୁଣି ଆସିବାକୁ କହିଥିଲ ବୋଲି ଭୁଲିଯାଉଛ ପରା !" ବରୁଣ ଧମକ ଦେଲେ ।

"ଓଃ, ଆପଣ ମୋ ପୁଅକୁ ନେବେ ପରା । କିନ୍ତୁ ଯଜ୍ଞରେ ଉତ୍ସର୍ଗ କରିବାକୁ ହେଲେ ପଶୁ ମଧ୍ୟ ସଜ୍ଞାନ ହେବା ଆବଶ୍ୟକ । ଏହାଙ୍କ ବୟସ । ମାସକର ଶିଶୁ ବୁଝିବ କ'ଣ ? ଆପଣ କେଇ ବର୍ଷ ପରେ ଆସନ୍ତୁ । ତାର ଉପନୟନ ହୋଇଯାଉ ।" ରାଜା କହିଲେ ।

ବରୁଣ କ୍ରୋଧଭରା କଣ୍ଠରେ କହିଲେ, "ମନେ ହୁଏ ତୁମେ ମୋତେ ଭଣ୍ଡିବାକୁ ବସିଛ । ତୁମେ ନିଜ ସର୍ତ୍ତ ଭଙ୍ଗ କରିବାର ପରିଣତି କ'ଣ ହୋଇପାରେ ଜାଣିନାହିଁ ବୋଧ ହୁଏ । ବେଶ୍, ମୁଁ ତୁମ ପୁଅର ଉପନୟନ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବି । ସେତେବେଳେ ଯଦି ମୋତେ ପୁଣି କିଛି ଆଳ ଦେଖାଇ ଫେରାଇଦେବାର ଚେଷ୍ଟା କରିବ ତେବେ ମୁଁ ଶାପ ଦେବି ।"

ବରୁଣ ସେଥର ଫେରିଗଲେ । ରାଜା ପୁଅ ଲୋହିତାକ୍ଷକୁ ଉପଯୁକ୍ତ ଶିକ୍ଷାଦାନ ଦେଲେ ଓ ବରୁଣଙ୍କ ଧମକ କଥା ଯେପରି ପୁଅ ନ ଜାଣିବ ସେ ଦିଗରେ ସାବଧାନ ରହିବାର କଲେ । କିନ୍ତୁ ପୁଅ କାନରେ ସେ କଥା ପଡ଼ିଲା । ସେ ଉପନୟନ ପରେ ଦିନେ ଘରୁ ପଳାଇଗଲା ।

ବରୁଣ ଆସି ପହଞ୍ଚିବା ବେଳକୁ ରାଜା କହିଲେ, "ଆଜ୍ଞା, ମୁଁ କରିବି କ'ଣ ? ପୁଅ କୁଆଡ଼େ ପଳାଇଛି ମୁଁ ଜାଣେନା ।" ବରୁଣ କ୍ରୋଧାନ୍ୱିତ ହୋଇ କହିଲେ ତୁମେ ମୋତେ ପ୍ରତାରିତ କରିଛ । ତୁମକୁ ଜଳୋଦର ରୋଗ ହେଉ ।"

ରାଜା ରୋଗାକ୍ରାନ୍ତ ହେଲେ । ଏକେ ପୁଅ ନିରୁଦ୍ଦେଶ ହୋଇଥିବାର ଦୁଃଖ, ତହିଁରେ ପୁଣି ଶାରୀରିକ ପୀଡ଼ା — ସେଥିରେ ରାଜା ବହୁତ ମ୍ରିୟମାଣ ହୋଇପଡ଼ିଲେ ।



ଏକ ଗୁମ୍ଫାରେ ଲୁଚିରହିଥାନ୍ତି ଲୋହିତାଶ୍ୱ । ଜଣେ ପଥିକ ତାଙ୍କୁ ଚିହ୍ନିପାରି ତାଙ୍କ ବାପାଙ୍କ ଦୁର୍ଦ୍ଦଶା କଥା ଜଣାଇବାରୁ ଲୋହିତାଶ୍ୱ ଉଆସ ଅଭିମୁଖେ ଚାଲିଲେ । କିନ୍ତୁ ବାଟରେ ଛଦ୍ମବେଶୀ ଇନ୍ଦ୍ର ତାଙ୍କୁ ଭେଟି କହିଲେ, "ତୁମକୁ ଯଜ୍ଞରେ ଉତ୍ସର୍ଗ ନ କଲେ ତୁମ ପିତା ଯନ୍ତ୍ରଣାଦାୟକ ବ୍ୟାଧିରୁ ମୁକ୍ତ ହେବାର ଆଶା ନାହିଁ । ବରୁଣ ତୁମକୁ ଅପେକ୍ଷା କରିଛନ୍ତି । ତୁମେ ନିଶ୍ଚିତ ମୃତ୍ୟୁ-ମୁଖକୁ ଯାଉଛ କିପରି ?"

ଇନ୍ଦ୍ରଙ୍କ ଚେତାବନୀ ଶୁଣି ଲୋହିତାଶ୍ୱ ଆଉ ଅଗ୍ରସର ହେଲେ ନାହିଁ । ପୁଣି ଗୁମ୍ଫା ଭିତରକୁ ଫେରିଗଲେ ।

ଏଣେ ହରିଶ୍ଚନ୍ଦ୍ର ନିଜ କୁଳଗୁରୁ ବଶିଷ୍ଠଙ୍କୁ ପଚାରିଲେ, "ଗୁରୁଦେବ ! ଏ ରୋଗରୁ ମୁକ୍ତ ହେବାର କ'ଣ କୌଣସି ପନ୍ଥା ନାହିଁ ?"

"ବତ୍ସ ! ନିଜ ପୁଅକୁ ଉତ୍ସର୍ଗ କରି ନ ପାରିବା ହେତୁ ତୁମର ଏ ବ୍ୟାଧି । ତୁମେ କୌଣସି ବାଳକକୁ ପୋଷ୍ୟ କରିନେଇ ଉତ୍ସର୍ଗ କରି ଶାପମୁକ୍ତ ହୁଅ ।" ବଶିଷ୍ଠ ପରାମର୍ଶ ଦେଲେ ।

ରାଜା ତାଙ୍କ ମନ୍ତ୍ରୀଙ୍କୁ କହିଲେ, "ଯଜ୍ଞରେ ଉତ୍ସର୍ଗ କଲା ଭଳି ସୁଲକ୍ଷଣଯୁକ୍ତ କୌଣସି ବ୍ରାହ୍ମଣ ବାଳକକୁ ଯୋଗାଡ଼ କର । ବାଳକର ପିତାମାତାଙ୍କୁ ସନ୍ତୁଷ୍ଟ କରିବା ପକାଶେ ଯାହା ଲୋଡ଼ା ତାହା କରିପାର ।"

ମନ୍ତ୍ରୀ ବହୁତ ସନ୍ଧାନ କରି ଶେଷକୁ ଅଜୀଗର୍ତ୍ତ ନାମକ ଜଣେ ବ୍ରାହ୍ମଣଙ୍କର ସନ୍ଧାନ ପାଇଲେ । ତାଙ୍କର ଥିଲେ ତିନିପୁଅ । ବଡ଼ ପୁଅ ପିତାର ଓ ସାନ ପୁଅ ମାତାର ପ୍ରିୟ । ମଝିପୁଅ ଶୁନଃ-ଶେପଙ୍କୁ ମନ୍ତ୍ରୀ ଯୋଗାଡ଼ କରି ଆଣିଲେ ।

ଶୁନଃଶେପଙ୍କ ମୁଖମଣ୍ଡଳ ଭକ୍ତି ଓ ନିଷ୍ଠାର ଛଟାରେ ଦ୍ୟୁତିମାନ୍ ଦିଶୁଥିଲା । ସେ ରାଜାଙ୍କ ବିପଦ ବୁଝି ସ୍ୱେଚ୍ଛାରେହିଁ ମନ୍ତ୍ରୀଙ୍କ ସହ ଅଗ୍ରସର ହେଉଥା'ନ୍ତି । ସେ ହୃଷ୍ଟଚିତ୍ତରେ ନାନାଦି ସ୍ତୁତି-ଗାନ କରି ଚାଲିଥାନ୍ତି । ଯିଏ ତାଙ୍କୁ ଦେଖୁଥାଏ ସେ ତାଙ୍କ ପ୍ରତି ସ୍ନେହପରାୟଣ ହୋଇ ଉଠୁ-



ଥାଏ । ସେ ରାଜ ନଗରରେ ପହଞ୍ଚିବା ମାତ୍ରେ ରାଜାଙ୍କ ଲୋକେ ତାଙ୍କୁ ଯାଗ୍ଲେଟିନେଲେ ।

ଶୁନଃଶେପ ଥିଲେ ଅତୀବ ଭକ୍ତପ୍ରାଣବାଳକ । ସେ ଯଜ୍ଞ ପାଇଁ ପ୍ରସ୍ତୁତ ହେଲେ । ଯଜ୍ଞ ବି ଆରମ୍ଭ ହୋଇଗଲା । ପୁରୋହିତମାନେ ମନ୍ତ୍ରପାଠ କଲେ ଓ ଉତ୍ସର୍ଗର ସମୟ ହେଲା ଆସନ୍ନ ।

କିନ୍ତୁ ବାଳକ ଉପରେ ବିଶ୍ୱାମିତ୍ରଙ୍କର ଦୟା ହେଲା । ସେ ଶୁନଃଶେପଙ୍କୁ ଛାଡ଼ିଦେବା ପାଇଁ ରାଜାଙ୍କୁ ପରାମର୍ଶ ଦେଲେ । ରାଜା ଶୁଣିଲେ ନାହିଁ । ସେ ତେଣୁ ଶୁନଃଶେପଙ୍କୁ ବରୁଣଙ୍କୁ ତୁଷ୍ଟ କଲା ଭଳି ପ୍ରାର୍ଥନାଟିଏ ଶିଖାଇଦେଲେ । ଶୁନଃ-ଶେପ ଯେତେବେଳେ ଯଜ୍ଞ ପାଖରେ ବସି ସେ ପ୍ରାର୍ଥନା ଗାନ କଲେ, ସେତେବେଳେ ସବୁ ଶ୍ରୋତାଙ୍କ ହୃଦୟ ବିଗଳିତ ହେଲା । ସ୍ୱୟଂ ସ୍ୱୟଂ ବରୁଣଦେବ ସେଠାରେ ଆବିର୍ଭୂତ ହେଲେ ଏବଂ ସେ ଶୁନଃଶେପଙ୍କୁ ମୁକ୍ତ କରିବାକୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ରାଜାଙ୍କୁ ବ୍ୟାଧି-ମୁକ୍ତ କରିଦେଇ ଗଲେ ।

ରାଜା ଯେ ଶୁନଃଶେପଙ୍କୁ ଛାଡ଼ିଦେବା ପାଇଁ ତାଙ୍କ ପରାମର୍ଶ ଗ୍ରହଣ କରି ନ ଥିଲେ, ସେ କଥା ବିଶ୍ୱାମିତ୍ର ଭୁଲିପାରିଲେ ନାହିଁ । ସେ ରାଜାଙ୍କୁ ଉଚିତ ଶିକ୍ଷା ଦେବା ପାଇଁ ଦୃଢ଼ନିଶ୍ଚୟ କଲେ ।

ଦିନେ ରାଜା ବଣକୁ ଶିକାର କରିବାକୁ ଯାଇଥିବା ବେଳେ ବିଶ୍ୱାମିତ୍ର ଗୋଟିଏ ବୁଢ଼ା ବ୍ରାହ୍ମଣ ବେଶରେ ତାଙ୍କୁ ଭେଟି କଥାରେ କଥାରେ ତାଙ୍କୁ ଭୁଲାଇ ସନ୍ଧ୍ୟ କରାଇନେଇ ତାଙ୍କ ରାଜ୍ୟ ଓ ସର୍ବସ୍ୱ ଛଡ଼ାଇନେଲେ । ରାଜା ବନବାସୀ ହେଲେ ।

ଏହା ଜାଣି ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ବହୁତ ଗାଳି ଦେଲେ ଓ କହିଲେ, "ତୁମେ ଅତ୍ୟନ୍ତ ପ୍ରତିହିଂସାପରାୟଣ । ତୁମର ଧ୍ୟାନ ତପସ୍ୟା ବକଧ୍ୟାନ ଭଳି ଛଳନାମୂଳକ । ତୁମେ ଗୋଟାଏ ବକପକ୍ଷୀ ବନିଯାଅ ।"

ବିଶ୍ୱାମିତ୍ର ବି କୁପିତ ହୋଇ ଶାପ ଦେଲେ, "ମୁଁ ଯେ ଯାଏ ବକ ହୋଇ ରହିଥିବି, ତୁମେ

ବି ସେ ଯାଏ ବକ ହୋଇ ରୁହ ।"

ଦୁହେଁ ବକ ବନିଗଲେ । ମାନସରୋବର ତୀରରେ ଥାଇ ଦୁହେଁ ପ୍ରତ୍ୟହ ଦୁହିଁଙ୍କ ସହ ଲଢ଼ୁଥାନ୍ତି ଓ ପରସ୍ପର ଆହତ ହେଉଥାନ୍ତି ।



ଦିନେ ବ୍ରହ୍ମା ସେଠାରେ ପହଞ୍ଚି ଉଭୟଙ୍କୁ ଶାପମୁକ୍ତ କଲେ ଏବଂ ନିଜ ନିଜ ଆଶ୍ରମକୁ ପଠାଇଦେଲେ ।

ଏହା ପରେ ପୁଣି ଏପରି ଏକ ଘଟଣା ଘଟିଲା, ଯେଉଁଥିରେ ବଶିଷ୍ଠ ଜଣଙ୍କୁ ଶାପ ଦେଇ ନିଜେ ଶାପଗ୍ରସ୍ତ ହେଲେ ।

ଇକ୍ଷ୍ୱାକୁଙ୍କର ଜଣେ ପୁଅ ନିମି ଯେପରି ଧର୍ମାତ୍ମା ଥିଲେ ସେହିପରି ସଚ୍ଚରିତ୍ର ଥିଲେ । ସେ ଗୌତମମୁନିଙ୍କ ଆଶ୍ରମ ନିକଟରେ ବ୍ରାହ୍ମଣ-ମାନଙ୍କ ନିମନ୍ତେ ଗୋଟିଏ ଆଦର୍ଶ ବସତି ସ୍ଥାପନ କରିଥିଲେ ।

ନିମିଙ୍କ ମନରେ ଗୋଟିଏ ବିଶେଷ ଯଜ୍ଞ କରିବା ପାଇଁ ଇଚ୍ଛା ହେଲା । ସେ ଯଜ୍ଞ ଦୀର୍ଘକାଳ ଚାଲିଲେ । ଯଜ୍ଞ ପାଇଁ ସେ ଆବଶ୍ୟକୀୟ ସବୁ ସାଜସରଞ୍ଜାମ ସଂଗ୍ରହ କଲେ ଓ ଭୃଗୁ, ପୁଲହ ଅଙ୍ଗୀରସ, ଗୌତମ, ପୁଲସ୍ତ୍ୟ, ଋଚିକ ପ୍ରମୁଖ ଯଜ୍ଞ-ବିଶେଷଜ୍ଞ ମୁନିଋଷିମାନଙ୍କୁ ନିମନ୍ତ୍ରଣ ପଠାଇଲେ । ତା'ପରେ ସେ କୁଳଗୁରୁ ବଶିଷ୍ଠଙ୍କୁ ଭେଟି ମହାଦେବୀଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହେବାକୁ ଯାଉଥିବା ଏହି ମହାନ ଯଜ୍ଞର ମୁଖ୍ୟ ପୁରୋହିତ ହେବାକୁ ନିବେଦନ କଲେ ।

କିନ୍ତୁ ବଶିଷ୍ଠ କହିଲେ, "ଇନ୍ଦ୍ର ମୋତେ ଜଗଦମ୍ବାଙ୍କ ଉଦ୍ଦେଶ୍ୟରେ ଯଜ୍ଞ କରିବାକୁ ଅନୁରୋଧ କରିଛନ୍ତି । ସେ ଯଜ୍ଞ ଶେଷ ହେବା ପର୍ଯ୍ୟନ୍ତ ତୁମେ ଅପେକ୍ଷା କର ।"

"ମହାନୁଭବ ! ଆପଣ ଆମର କୁଳଗୁରୁ । ଆପଣଙ୍କର ପ୍ରଥମ କର୍ତ୍ତବ୍ୟ ଆମମାନଙ୍କ ଯଜ୍ଞ ତୁଲାଇବା । ମୁଁ ସବୁ ବ୍ୟବସ୍ଥା କରିସାରିଲିଣି । ମୁନିଋଷିଙ୍କ ଉଦ୍ଦେଶ୍ୟରେ ନିମନ୍ତ୍ରଣ ପଠାଇ-ସାରିଲିଣି । ଏପରି ସ୍ଥଳେ ଇନ୍ଦ୍ରଙ୍କୁ ଅପେକ୍ଷା କରିବାକୁ କହିବାହିଁ ଆପଣଙ୍କ ପକ୍ଷରେ ସମୀଚୀନ ହେବ ।"



କିନ୍ତୁ ବଶିଷ୍ଠ ନମିଙ୍କ ପ୍ରସ୍ତାବ ଗ୍ରହଣ ନ କରି ପ୍ରଥମେ ଇନ୍ଦ୍ରଙ୍କ ଯଜ୍ଞ ତୁଲାଇବାକୁ ଚାଲିଗଲେ । ନମି ଗୌତମମୁନିଙ୍କୁ ମୁଖ୍ୟ ପୁରୋହିତ ରୂପେ ବରଣ କରି ନିଜ ଯଜ୍ଞ ସୁଚାରୁ ରୂପେ ତୁଲାଇଲେ ଓ ବିଶେଷ ମୁନିଋଷି ଓ ବ୍ରାହ୍ମଣମାନଙ୍କୁ ପ୍ରଚୁର ଦକ୍ଷିଣା ଦେଇ ବିଦାୟ କଲେ ।

ଇନ୍ଦ୍ରଙ୍କ ଯଜ୍ଞ ସମାପନ କରି ବଶିଷ୍ଠ ବହୁତ ଦାନଦକ୍ଷିଣା ପାଇଲେ ଓ ତା'ପରେ ଆସି ନମିଙ୍କୁ ଦେଖା କରିବାକୁ ପହଞ୍ଚିଲେ । ନମି ସେତେବେଳେ କ୍ଲାନ୍ତ ହୋଇ ଶୋଇଥିଲେ । ବଶିଷ୍ଠ ଯେତେବେଳେ ଶୁଣିଲେ ଯେ ତାଙ୍କୁ ଅପେକ୍ଷା ନ କରି ନମି ଯଜ୍ଞ ଆରମ୍ଭ କରିଛନ୍ତି, ସେତେବେଳେ ସେ ଅଗ୍ନିଶର୍ମା ହୋଇ ନମିଙ୍କୁ ଏହି ଶାପ ଦେଲେ, "ମୁଁ ତୁମର କୁଳଗୁରୁ । ଅଥଚ ମୋତେ ପୁରୋହିତ ନ କରି ଅନ୍ୟଙ୍କୁ ପୁରୋହିତ କଲ୍ ଭଳି ଔଦ୍ଧତ୍ୟ ତୁମେ କରିଛ । ବର୍ତ୍ତମାନ ତୁମେ ଯେପରି ନିର୍ଜୀବ ଭଳି ଶୋଇଛ, ତୁମ ଦେହ ସେମିତି ଅବସ୍ଥାରେ ତଳକୁ ଗଡ଼ିପଡ଼ୁ । ତୁମେ ହୁଅ ବିଦେହ !"

ନମିଙ୍କ ସେବକମାନେ ଏ ଶାପ ଶୁଣି ଭୟତ୍ରସ୍ତ ହୋଇ ଦୌଡ଼ିଯାଇ ରାଜାଙ୍କୁ ନିଦରୁ ଉଠାଇ ସବୁ କଥା କହିଲେ । ରାଜା ନମି ମଧ୍ୟ କ୍ରୋଧରେ ଥରି ଥରି କହିଲେ, "କୁଳଗୁରୁ ହୋଇ ମଧ୍ୟ ତୁମେ ମୋ ଅନୁରୋଧ ପ୍ରତ୍ୟାଖ୍ୟାନ କରି ଧନ ଲୋଭରେ ଅନ୍ୟତ୍ର ଯଜ୍ଞ କରିବାକୁ ଚାଲିଗଲ । ତୁମେ ଏତେ ଦାୟିତ୍ୱହୀନ । ମୁଁ କୌଣସି ତ୍ରୁଟି କରିନାହିଁ । ତୁମକୁ ଅବଜ୍ଞା ନ କରି ପ୍ରଥମେ ତୁମକୁ ଯଜ୍ଞର ଦାୟିତ୍ୱ ଦେବାକୁ ଅନୁରୋଧ କରିଥିଲି । ଅଥଚ ତୁମେ ବର୍ତ୍ତମାନ ଆସି ମୋତେ ଶାପ ଦେଉଛ । ବେଶ୍, ମୁଁ ଯଦି ନିଷ୍ପାପ ହୋଇଥିବି, ତୁମ ଶରୀରର ଗତି ମଧ୍ୟ ମୋହରି ଭଳି ହେବ ।"

ବଶିଷ୍ଠ ସେଠାରୁ ଯାଇ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ ଓ ତାଙ୍କୁ ନମିଙ୍କ ଅଭିଶାପ କଥା ଜଣାଇ କହିଲେ, "ମୋ ଦେହ ଯଦି ନିର୍ଜୀବ ହୋଇ ପଡ଼ିରହିବ, ତେବେ ଆପଣ ଏପରି

ବ୍ୟବସ୍ଥା କରନ୍ତୁ ଯାହା ଦ୍ୱାରା ମୋ ଚେତନା ଆଉ କାହାର ଶରୀରରେ ତିଷ୍ଠିରହିବ ।"

ଏ କଥା ଶୁଣି ବ୍ରହ୍ମା କହିଲେ, "ତୁମେ ମିତ୍ରାବରୁଣ ଦେହରେ ନିଜ ଚେତନା ପ୍ରବେଶ କରାଇପାର ।"

ବ୍ରହ୍ମାଙ୍କୁ ପ୍ରଣାମ କରି ବିଦାୟ ନେଇ ବଶିଷ୍ଠ ଯାଇ ବରୁଣଲୋକରେ ପହଞ୍ଚିଲେ । ସେଠାରେ ନିଜ ଦେହ ରଖି ଚେତନାକୁ ମିତ୍ରାବରୁଣ ଦେହରେ ପ୍ରବେଶ କରାଇଲେ ।

ଏଣେ ନିମି ଏକନିଷ୍ଠ ଭାବରେ ନିଜ ଯଜ୍ଞ ଉଦ୍‌ଯାପନ କଲେ । ଯଜ୍ଞଭୋକ୍ତା ଦେବଗଣ ତାଙ୍କ ଆଗରେ ପ୍ରତ୍ୟକ୍ଷ ହୋଇ କହିଲେ, "ଆପଣଙ୍କର ମହାନ୍ ଯଜ୍ଞ ସମ୍ପୂର୍ଣ୍ଣ ସଫଳ ହୋଇଛି । ଆପଣଙ୍କର ଯଦି କୌଣସି ଇଚ୍ଛା ଥାଏ, କୁହନ୍ତୁ । ଆମେ ପୂରଣ କରିବୁଁ । ସୁନ୍ଦର ନରଦେହ ନା ସୁରଦେହ ଚାହାନ୍ତି ?"

ନିମି କହିଲେ, "ଦେହ ଥିଲେ ଦେହ ପ୍ରତି ବିପଦ ଲାଗିଥିବ । ମୋର କୌଣସି ଦେହ ଲୋଡ଼ା ନାହିଁ । ମୋତେ ବାୟୁଦେହ ଦିଅନ୍ତୁ ।"

ଦେବତାମାନେ ପରସ୍ପର ମୁହାଁମୁହିଁ ହୋଇ କହିଲେ, "ଏଭଳି ବର କେବଳ ଜଗଦମ୍ବାହିଁ ଦେଇପାରିବେ ।"

ନିମି ଜଗଦମ୍ବାଙ୍କୁ ଧ୍ୟାନ କଲେ । ମହାଦେବୀ ପ୍ରତ୍ୟକ୍ଷ ହୋଇ କହିଲେ, "ତୁମେ ସମସ୍ତ ଜୀବିତ ପ୍ରାଣୀର ଦୃଷ୍ଟିରେ ରହିବ । ତୁମ ଯୋଗୁ ପ୍ରାଣୀମାନେ ପଲକ ପକାଇବେ ।"

ନିମିଙ୍କ ଦେହ ଟଳିପଡ଼ିଲା । ସେହି ଦେହ ଉପରେ ମନ୍ତ୍ରପାଠ କରି ମୁନିମାନେ ତହିଁରୁ ଜନକଙ୍କୁ ସୃଷ୍ଟି କଲେ । ନିମି ବିଦେହ ହେବା ଅବସ୍ଥାରେ ତାଙ୍କ ଦେହ ଭିତରୁ ସେ ସୃଷ୍ଟି ହୋଇଥିବାରୁ ତାଙ୍କ ଅନ୍ୟ ନାମ ହେଲା ବିଦେହ । ସେ ଗଙ୍ଗାତଟରେ ରାଜ୍ୟ ସ୍ଥାପନ କଲେ । ମିଥିଳା ହେଲା ତାଙ୍କ ରାଜଧାନୀ । ରାଜ୍ୟର ନାମ ହେଲା ବିଦେହ ।





## ସତ୍ୟରକ୍ଷା

ପ୍ରାଚୀନ କାଳର କଥା । ପାଟଳିପୁତ୍ରରେ ଜଣେ ଧନୀ-ବ୍ରାହ୍ମଣ ଥିଲେ । ପ୍ରସାଦ ନାମରେ ତାଙ୍କର ଏକ ପୁଅ ଥିଲା ।

ପ୍ରସାଦ ଯେପରି ଗୁଣବାନ୍ ସେହିପରି ସତ୍ ଓ ସାହସୀ । ଦିନେ ତା' ବାପା ତାକୁ ପାଖକୁ ଡାକି କହିଲେ, "ଏଥର ତୋ ବିବାହ ଦେଇ ମୁଁ ଦାୟିତ୍ୱମୁକ୍ତ ହେବାକୁ ଚାହେଁ ।"

ବାପା ଯେତେଗୁଡ଼ିଏ କନ୍ୟା କଥା କହିଲେ, ପ୍ରସାଦ ସେ ସମସ୍ତଙ୍କୁ ଜାଣିଥିଲା । ସେମାନେ ଅବଶ୍ୟ ଧନୀ ଘରର କନ୍ୟା । କିନ୍ତୁ ସେମାନଙ୍କ ଭିତରୁ କାହାକୁ ହେଲେ ବାହା ହେବାକୁ ମନ ବଳିଲା ନାହିଁ ।

"ବାପା, ମୁଁ କିଛିଦିନ ପାଇଁ ଦେଶ ଭ୍ରମଣରେ ଯିବାକୁ ଚାହେଁ ।" ଏହା କହି ବାପାଙ୍କ ଅନୁମତି ନେଇ ପ୍ରସାଦ ବାହାରିଗଲା । ନର୍ମଦା କୂଳବର୍ତ୍ତୀ ଗୋଟିଏ ସହରରେ ଜଣେ ବୃଦ୍ଧ ବ୍ରାହ୍ମଣ ସହ ତା'ର ପରିଚୟ ହେଲା । ବୃଦ୍ଧଟି ତାକୁ ବହୁତ ସମୟ ପର୍ଯ୍ୟନ୍ତ ଲକ୍ଷ୍ୟ କରି ତାକୁ ଘରକୁ ଡାକିନେଇ ଖିଆପିଆ କରାଇଲା । ଯେତେବେଳେ ପ୍ରସାଦ ତା' ପ୍ରତି କୃତଜ୍ଞ ଅନୁଭବ କଲାଣି ବୋଲି ସେ ବୁଝିଲା, ସେତେବେଳେ ସେ ତାକୁ କହିଲା, "ପୁଅ, ତୁ ମୋର ଗୋଟିଏ ଅନୁରୋଧ ରକ୍ଷା କରିବୁ ? ମୁଁ ତୋତେ ଉପଯୁକ୍ତ ପୁରସ୍କାର ଦେବି ।"

"କ'ଣ କରିବାକୁ ହେବ ?" ପ୍ରସାଦ ପଚାରିଲା ।

"କେବଳ ଦିନକ ପାଇଁ ମୁଁ ତୋତେ ଯାହା କରିବାକୁ କହିବି, ତୁ ତାହାହିଁ କରିବୁ । କିନ୍ତୁ ପ୍ରଥମେ ତୁ ମୋ କଥା ରଖିବୁ ବୋଲି ସତ୍ୟ କର । ତା'ପରେ ଯାଇ ସମସ୍ତ ବିଷୟ

(ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)



କହିବ ।" ବୁଢ଼ା ନିଜର କଲା ।

"ଆଚ୍ଛା, ସତ୍ୟ କଲି ।" ପ୍ରସାଦ କହିଲା ।

"ତେବେ ତୁ କାଲି ସକାଳେ ମୋ ସହ ନଈ ସେପାରିକୁ ଯିବୁ । ସେଠାରେ ଜଣେ ଧନୀ ବ୍ରାହ୍ମଣ ଅଛନ୍ତି । ତାଙ୍କର ଏକ ମାତ୍ର ସନ୍ତାନ ହେଲା ଗୋଟିଏ ରୂପବତୀ କନ୍ୟା । ତା' ସହ ମୋ ପୁଅକୁ ବିବାହ ଦେବାକୁ ସେ ମୋଟା-ମୋଟି ରାଜି ହୋଇଛନ୍ତି । କିନ୍ତୁ ମୋ ପୁଅକୁ ଦେଖିଲେ ଯାଇ ସେ ନିଜର ଶେଷ ସିଦ୍ଧାନ୍ତ ଦେବେ ବୋଲି କହିଛନ୍ତି । ଅସୁବିଧା ହେଲା, ତୁ ଦେଖିବାକୁ ଯେତିକି ଭଲ, ମୋ ପୁଅ ସେତିକି ଖରାପ । ସେ ବୋକା ମଧ୍ୟ । ତୋତେ ମୁଁ ମୋ ପୁଅ ବୋଲି କହିବି । ବିବାହ ହୋଇ-ଯିବା ପରେ ଆସିବା ବେଳେ ତୁ ବାହ୍ନ ଭାଙ୍ଗି ଚାଲିଯିବୁ । ଖାଲି ଗୋଟାଏ କଥା ଜଗିବୁ । କନ୍ୟା ଯେମିତି ଭଲ ଭାବରେ ତୋ ମୁହଁ ନ ଦେଖିବ । ତା' ହେଲେ ତୋ ବଦଳରେ ମୋ ପୁଅ ବାଟରେ ତା' ସାଙ୍ଗରେ ଚାଲିଲେ ସେ ବୁଝିପାରିବ ନାହିଁ ।" ବୁଢ଼ା କହିଲା ।

ଏ ପ୍ରସ୍ତାବରେ ପ୍ରସାଦର ମନ ବିଷାଦରେ ଭରିଗଲା । କିନ୍ତୁ ସେ ସତ୍ୟ କରିଥିବା ହେତୁ ବୁଢ଼ା ସହ ଗଲା ।

ପ୍ରସାଦକୁ ଦେଖି, ତା' ସହ କଥାବାର୍ତ୍ତା କରି କନ୍ୟାପିତା ଅତ୍ୟନ୍ତ ବିଗଳିତ ହେଲେ । ଝରକା ଦେଇ ଗୋପନରେ କନ୍ୟା ବି ତାକୁ ଦେଖିନେଲା ଓ ବହୁତ ଖୁସୀ ହେଲା ।

ବିବାହ ପୂର୍ବରୁ ପ୍ରସାଦ ନଈକୁ ଗାଧୋଇବା ପାଇଁ ଗଲା । ହଠାତ୍ ଗୋଟିଏ ରାକ୍ଷସ ତାକୁ ଧରିପକାଇ ଗ୍ରାସ କରିବାକୁ ଉଦ୍ୟତ ହେଲା ।

"ଅଳ୍ପ ଧର । ମୁଁ ଜଣେ ବ୍ରାହ୍ମଣକୁ ଗୋଟାଏ ବିଷୟରେ କଥା ଦେଇଛି । ମୋ ସତ୍ୟରକ୍ଷା କରିସାରି ମଝିରାତକୁ ଆସିବି । ତୁମେ ଖାଇବ ।" ପ୍ରସାଦ କହିଲା ।

ପ୍ରସାଦର କଥାରେ ରାକ୍ଷସର ବିଶ୍ୱାସ ଜନ୍ମିଲା ଓ ସେ ତାକୁ ଛାଡ଼ିଦେଇ ସେଠାରେ ଅପେକ୍ଷା କଲା ।

ବିବାହ ସମ୍ପନ୍ନ ହୋଇଗଲା । ବର ଓ ବଧୂ ସେମାନଙ୍କ କୋଠରିକୁ ଗଲେ । କନ୍ୟା ଓଢ଼ଣା ଟାଣି ରହିଥାଏ । କିନ୍ତୁ ପ୍ରସାଦ ତା' ସହ କଥାବାର୍ତ୍ତା କରିବା ନିମନ୍ତେ କୌଣସି ଆଗ୍ରହ ନ ଦେଖାଇବାରୁ ସେ ଆଶ୍ଚର୍ଯ୍ୟ ହେଲା ।

ପ୍ରସାଦ ନିଦରେ ଶୋଇବାର ଛଳନା କଲା । କନ୍ୟା ବି ତାହାହିଁ କଲା । ମଝିରାତିରେ ପ୍ରସାଦ ଉଠି ଧୀରେ ଧୀରେ କୋଠରି ବାହାରକୁ ଗଲା ।

ବରର ଗତିବିଧି ରହସ୍ୟମୟ ମନେ ହେବାରୁ କନ୍ୟା ତାକୁ ଅନୁସରଣ କଲା । ପ୍ରସାଦ ଯାଇ ରାକ୍ଷସ ଆଗରେ ପହଞ୍ଚିଲା । ରାକ୍ଷସ କହିଲା, "ତୁମ ଭଳି ସୁନ୍ଦର ଯୁବକ ମୁଁ ଦେଖିନାହିଁ । ତୁମକୁ ଖାଇଲେ ମୁଁ ପବିତ୍ର ହେବି !"

ହଠାତ୍ କନ୍ୟା ଆଗକୁ ଦୌଡ଼ିଯାଇ ରାକ୍ଷସକୁ କହିଲା, "ନା, ତୁମେ ତାଙ୍କୁ ଖାଇପାରିବ ନାହିଁ । ଆଜି ସନ୍ଧ୍ୟାରେ ତାଙ୍କ ସହ ମୋର ବିବାହ ହୋଇଛି ।"

"ଆରେ ଝିଅ, ସେସବୁ କଥା ଭାବିଲେ ମୋର ଚଳିବ ? ମଧ୍ୟେ ମଧ୍ୟେ ମଣିଷଟାଏ ନ ଖାଇଲେ ମୋର ନ ଚଳେ !" ରାକ୍ଷସ କହିଲା ।

"ତେବେ ମୋତେ ଖାଅ । ମୁଁ ଅନାଥ ହୋଇ ବଞ୍ଚିବାକୁ ଚାହେଁନା ।" କନ୍ୟା ଟାଣ ସ୍ୱରରେ କହିଲା ।

"ମୁଁ ସ୍ତ୍ରୀଲୋକଙ୍କୁ ଖାଏ ନାହିଁ । ତୋ






ବଞ୍ଚିବାରେ ଅସୁବିଧା କ'ଣ ? ଭିକ ମାଗିବୁ !" ରାକ୍ଷସ ପରାମର୍ଶ ଦେଲା ।

"ମୋତେ ଭିକ ମାଗିଆସିବ ନାହିଁ ।" କନ୍ୟା କହିଲା ।

ରାକ୍ଷସ ମୁହୂର୍ତ୍ତକ ପାଇଁ ନୀରବ ରହି କହିଲା, "ଗୋଟାଏ ସତ କଥା କହିଦେଉଛି । ମୁଁ ସାଧାରଣ ରାକ୍ଷସ ନୁହେଁ । ମୋର କିଛି ତପଃ ଶକ୍ତି ଅଛି । ମୁଁ ତୋତେ ଏହି ବର ଦେଉଛି : ତୁ ଯାହାକୁ ଯାହା ମାଗିବୁ ସେ ଯଦି ତାହା ନ ଦେବ ତେବେ ତତ୍‌କ୍ଷଣାତ୍ ତା'ର ଶିର ବିଦୀର୍ଣ୍ଣ ହୋଇଯିବ ! ଗୋଟାଏ ଦୁଇଟା ସ୍ଥାନରେ ଏମିତି ହେଲେ ଲୋକେ ତୋତେ ଭିକ୍ଷା ଦେବାକୁ ବାଟ ପାଇବେ ନାହିଁ ।"

"ଧନ୍ୟବାଦ । ବର୍ତ୍ତମାନ ମୁଁ ତୁମକୁ ଏହି ଭିକ୍ଷା ମାଗୁଛି : ମୋ ସ୍ୱାମୀଙ୍କୁ ମୋତେ ଫେରାଇଦିଅ ।" କନ୍ୟା କହିଲା ।

ରାକ୍ଷସ ଚମକିଉଠି ତା'ପରେ ହସି କହିଲା, "ସାବାସ୍ ଝିଅ । ତୁ ବହୁତ ବୁଦ୍ଧିମତୀ । ହେଲା । ଦୁହେଁ ଯାଅ ।"

ପ୍ରସାଦ କନ୍ୟାର ସାହସ ଓ ଶକ୍ତି ଦେଖି ମୁଗ୍ଧ ହେଲା । ଦୁହେଁ ଘରକୁ ଫେରିଲେ । କିନ୍ତୁ ପ୍ରସାଦ ତଥାପି ଭଲ କରି କନ୍ୟା ସହ ପଦେ କଥା କହିପାରିଲା ନାହିଁ । ଯାହା ପ୍ରତି ସେ ପ୍ରତାରଣା କରୁଛି, ତାକୁ କହିବ କ'ଣ ?

ସକାଳେ ପ୍ରସାଦ ଓ କନ୍ୟାକୁ ଧରି ବୁଢ଼ା ଘର ଅଭିମୁଖେ ଯାତ୍ରାରମ୍ଭ କଲା । ନଈ କୂଳରେ ତା' ପୁଅ ବରବେଶ ପକାଇ ଅପେକ୍ଷା କରିଥାଏ । ବୁଢ଼ା ପୂର୍ବରୁ ଦୁଇଟି ଡଙ୍ଗାର ବ୍ୟବସ୍ଥା କରି ରଖିଥାଏ । କନ୍ୟା ସହ ଡଙ୍ଗାରେ ବୁଢ଼ା ଓ ତା' ପୁଅ ବସିଲେ । କେବଳ ପ୍ରସାଦ ଅନ୍ୟ ଡଙ୍ଗାରେ ବସିଲା ।

ବୁଢ଼ା ଚିରଦିନ ପାଇଁ ପ୍ରସାଦକୁ ନୀରବ କରିଦେବା ନିମନ୍ତେ ତା' ଡଙ୍ଗାର ନାଉରିମାନଙ୍କ ସହ ଗୋଟାଏ ବ୍ୟବସ୍ଥା କରିଥାଏ । ମଝିନଈରେ, ପ୍ରବଳ ସ୍ରୋତରେ ସେମାନେ ଡଙ୍ଗାଟିକୁ ବୁଡ଼ାଇଦେଲେ । ସେ ସ୍ରୋତ କାଟି ପହଁରି କୂଳକୁ ଯିବା ନାଉରିମାନଙ୍କ ପକ୍ଷରେ ସମ୍ଭବ ଥିଲା, କିନ୍ତୁ ଅନ୍ୟ କାହା ପକ୍ଷରେ ନୁହେଁ । ସେମାନେ ଭାବିଥିଲେ ପ୍ରସାଦ ବୁଡ଼ିମରିବ ।

ସେ ଡଙ୍ଗା ବୁଡ଼ିବା କଥା କନ୍ୟା ଜାଣିଲା

ନାହିଁ । ଆର ପାରିକୁ ଯାଇ ସେ ପ୍ରସାଦଙ୍କୁ ନ ଦେଖି ବୁଢ଼ାକୁ ପଚାରିଲା, "ମୋ ସ୍ୱାମୀ ଗଲେ କୁଆଡ଼େ ?"

"ହେଇ ପରା ତୋ ସ୍ୱାମୀ !" ବୁଢ଼ା ତା' ପୁଅକୁ ଦେଖାଇଦେଲା ।

କନ୍ୟା ମୁହୂର୍ତ୍ତକ ଭିତରେ ସବୁ ବୁଝିଗଲା । ସେ ଚିତ୍କାର କରି କହିଲା, "ତୁମର ଏଡ଼େ ସାହସ ? ତୁମେ ଭାବିଛ ପୃଥିବୀରେ ଧର୍ମ ନାହିଁ, ନ୍ୟାୟ ନାହିଁ ? ମୁଁ ଏଇ ବାଟେ ବାଟେ ରାଜ-ଦରବାରକୁ ଚାଲିଲି ।"

ବୁଢ଼ା ଓ ତା' ପୁଅ ଶଙ୍କିଗଲେ । ବେଶୀ ଗୋଳମାଳ ହେବା ପୂର୍ବରୁ ବୁଢ଼ା କହିଲା, "ଝିଅ, ମୋର ସନ୍ଦେହ ହେଉଛି, ତୋର ମୁଣ୍ଡ ଠିକ୍ ନାହିଁ । ତୁ ବରଂ ତୋ ବାପଘରକୁ ଫେରିଯା ।"

"ତାହାହିଁ ହେଉ । କିନ୍ତୁ ତୁମ ଲୋକଙ୍କ ନୌକାରେ ନୁହେଁ ।" ଏହାକହି କନ୍ୟା ପାଖ ଘରକୁ ଦୌଡ଼ିଗଲା । ସେ ଗାଁର ଲୋକଙ୍କ ସାହାଯ୍ୟରେ ସଙ୍ଗେ ସଙ୍ଗେ ନୌକା ଯୋଗାଡ଼ କରି ବାପଘରକୁ ଫେରିଗଲା ।

ପ୍ରସାଦ ପ୍ରବଳ ସ୍ରୋତରେ ଭାସିଯାଇ କୂଳରେ ଲାଗିଲା । "ମୁଁ ମରିଗଲେ ଭଲ ହୋଇ-ଥାନ୍ତା ।

କିନ୍ତୁ ବିଧାତା ଯେତେବେଳେ ମୋତେ ବଞ୍ଚାଇଦେଲେ, ସେତେବେଳେ ମୋର କିଛି କର୍ତ୍ତବ୍ୟ ଅଛି । କନ୍ୟା ତଥା କନ୍ୟା-ପିତାଙ୍କ ପ୍ରତି ମୁଁ ଘୋର ଅପରାଧ କରିଛି । ବୁଢ଼ା ମୋ ସହ ବିଶ୍ୱାସଘାତକତା କରି ମୋତେ ମାରିବାକୁ ବସିଥିଲା । ତେଣୁ ତା' ପ୍ରତି ମୋର କୌଣସି କର୍ତ୍ତବ୍ୟ ନାହିଁ । ବର୍ତ୍ତମାନ କନ୍ୟାଘରକୁ ଯାଇ ନିଜ ଦୋଷ ସ୍ୱୀକାର କରିବା ମୋର ପ୍ରଥମ କର୍ତ୍ତବ୍ୟ ।" ଏହା ଭାବି ପ୍ରସାଦ କନ୍ୟାଘରେ ଯାଇ ପହଞ୍ଚିଲା ।

କନ୍ୟା ତା'ର ଟିକିଏ ଆଗରୁ ପହଞ୍ଚିଥାଏ । ଉଭୟଙ୍କୁ ପାଇ କନ୍ୟାପିତାଙ୍କ ପରିବାରର ଆନନ୍ଦର ସୀମା ରହିଲା ନାହିଁ । ପ୍ରସାଦ ସେଠାରେ କିଛିଦିନ ରହି କନ୍ୟାକୁ ଧରି ନିଜ ଘରକୁ ଫେରିଲା ।



# ଚିତ୍ର-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଜୁନ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍‌ଡିଙ୍ଗସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଏପ୍ରିଲ୍ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "ଟିକି ପାଦ ଆମ ଆଗେଇ ଚାଲିଛି ଟିକି ମନେ ଆମ ଆଶାର ଜାଲ ।

ଦ୍ୱିତୀୟ ଚିତ୍ର : ଚାଲିରେ ସମତା ମନରେ ମମତା ରଖି ହେବା ଦିନେ ବଡ଼ ଖେଳାଳି ।"

ପୁରସ୍କାର ବିଜୟିନୀ : ସ୍ମୃତିରେଖା, ଅମଲପଡ଼ା, ଅନୁଗୁଳ ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.





# 'ଜହ୍ନମାମୁଁ' ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍‌ଟନ୍ ଏଜେନ୍‌ସୀଜ୍, ମାଡ୍ରାସ - ୬୦୦ ୦୨୬

# ସ୍ୱୟମ୍ବର

ରୂପା ସହ ଲକ୍ଷ୍ମଣର ବିବାହ ଅନୁଷ୍ଠିତ ହୋଇଯିବା ମାତ୍ରେ ଜଣାପଡ଼ିଲା ଲକ୍ଷ୍ମଣ ରାଜକୁମାର ନୁହେଁ ।

ରୂପା କ୍ରୋଧିତା ହେଲା । ଯିଏ ଛଦ୍ମପରିଚୟ ଦେଇଛି, ତା' ସହ ତା'ର କୌଣସି ସମ୍ପର୍କ ଥାଇ ନ ପାରେ !

ଲକ୍ଷ୍ମଣ ଚେଷ୍ଟାକୁ ଆତୁର ଛଳନା କଲା—ଯେମିତିକି ରୂପାର କୋପ ତାକୁ ହତାଶା ଭିତରକୁ ଠେଲି ଦେଇଛି ଓ ସେ ମଦ୍ୟପ ହେବାରେ ଲାଗିଛି !

କିନ୍ତୁ ପରୀକ୍ଷାରୁ ଏହା ବି ପ୍ରମାଣିତ ହେଲା ଯେ ଲକ୍ଷ୍ମଣ ସାହସୀ । ରୂପାକୁ ସେ ନିଜ ଜୀବନଠୁଁ ଅଧିକ ଭଲପାଏ । ରୂପାକୁ ଯେବେ ମାଖନଲାଲର ଦୁଷ୍ଟ ପୁଅ ଆକ୍ରମଣ କଲା, ତାକୁ ରକ୍ଷା କଲା ଲକ୍ଷ୍ମଣ ।

ତେଣେ ଦୁର୍ଗାଦେବୀଙ୍କ ଘରେ ମାଖନଲାଲ ଓ ତା' ପରିବାରର ପ୍ରାଦୁର୍ଭାବ ବଢ଼ି ଚାଲିଥାଏ । ରୂପା ଦୁଃସାହସିକ ପଦକ୍ଷେପ ନେଇ ସ୍ୱାମୀ ସହ ଚାଲିଗଲା ।

ଲକ୍ଷ୍ମଣ ରୂପାକୁ ନେଇ ଗୋଟିଏ ଝୁମ୍ପୁଡ଼ିଆ ଘରେ ରହିଲା । ରୂପାର ଧାରଣା, ଲକ୍ଷ୍ମଣ ଅଳ୍ପ ଦରମାର ଚାକିରିଟିଏ କରେ । ରୂପାର ବିଳାସୀ ଅତୀତ ତୁଳନାରେ ଏ ଜୀବନ କେତେ ଅସୁବିଧା ପୂର୍ଣ୍ଣ ! କିନ୍ତୁ ଏହାରି ଭିତରେ ରୂପା ବୁଝୁଥାଏ ଭଲ ପାଇବାର ମର୍ଯ୍ୟାଦା ।

ମାଖନଲାଲର ପରିବାରର ପ୍ରାଦୁର୍ଭାବରେ ଦୁର୍ଗାଦେବୀଙ୍କ ଘର ନର୍କରେ ପରିଣତ ହୋଇଥାଏ । ସେ ତାଙ୍କର ସମ୍ପୁଦାୟ ସମ୍ପତ୍ତି ସେମାନଙ୍କୁ ସମର୍ପି ନ ଦେଲେ ସେମାନଙ୍କ କବଳରୁ ତାଙ୍କୁ ନିସ୍ତାର ମିଳିବ ନାହିଁ ।

ଅବଶ୍ୟ ଦୁଷ୍ଟମାନଙ୍କ ଦାବୀ ପ୍ରତ୍ୟାଖ୍ୟାନ କରିବାର ସାହସ ତାଙ୍କର ଥିଲା, କିନ୍ତୁ ସେମାନଙ୍କ କବଳରୁ ନିଜକୁ ରକ୍ଷା କରିବା ଭଳି ଶକ୍ତି ନଥିଲା ।

ସେମାନେ ତାଙ୍କୁ ହତ୍ୟା କରିବାକୁ ଆଗଭର ହେଲେ । ଦାଉ ଦାଉ ଅଗ୍ନିଶିଖା ଭିତରେ ଦୁର୍ଗାଦେବୀ ଯେଉଁ ଆର୍ତ୍ତନାଦ କରୁଥାନ୍ତି, ତାକୁ ଶୁଣିବ କିଏ ?

ସେ କ'ଣ ରକ୍ଷା ପାଇବେ ? ରାମ ଓ ଲକ୍ଷ୍ମଣ ଏତେବେଳେ ତାଙ୍କର ସହାୟତା କରିପାରିବେ କି ?

ରଙ୍ଗୀନ୍ ପର୍ଦ୍ଦାରେ ଦେଖିବେ ଚମତ୍କାରିକ ସମାପ୍ତି ।





ଭି. ନାଗୀରେଡ୍ଡୀଙ୍କ ନୂତନ ପାରିବାରିକ ଚିତ୍ର

ବାପର ଚୂଡ଼ା ପରିଚୟ କାହାର!
ପୁଅ ପାଇଁ କର୍ତ୍ତବ୍ୟର ଆହ୍ୱାନ...
ପୁଅମାନେ କର୍ତ୍ତବ୍ୟପାଳନ କାହାର କରିଛନ୍ତି!
ଦେଖନ୍ତୁ...



ବି. ନାଗୀରେଡ୍ଡୀଙ୍କ ନୂତନ ପାରିବାରିକ ଚିତ୍ର

# ସ୍ୱୟମ୍ବର



ଏକ ପାରିବାରିକ ଚିତ୍ର – ପ୍ରକୃତରେ ଆପଣଙ୍କ ପାଇଁ!

# ରାମ ଓ ଶ୍ୟାମ






















ରସାଳ,
ମଧୁର,
ମଜାଦାର

ପାର୍ଲେ

**ପପିନ୍ସ** ଫଳର ସ୍ୱାଦଭରା ମିଠାଗୋଲି






୫ ଫଳର ସ୍ୱାଦରେ
ଭରା ରାସ୍ପବେରୀ, ସପୁରୀ, କାଳୋଜାମ
ଲେମ୍ବୁ, କମଳା ଲେମ୍ବୁ ଓ ଷ୍ଟ୍ରବେରୀ ।

everest/79/PP/262-or.

